ନବାନ୍ନ ଓ ପୌଷରେ ବିଭେ କରୁଥିଲେ ଓ ସେହି ଅଞ୍ଚଳର ଗୌନ୍ତିଆ-ମାନେ ରଜାଙ୍କୁ ଓ ଗୌନ୍ତିଆଣୀମାନେ ରଣୀଙ୍କୁ ଟୀକା କରୁଥିଲେ ।

୯) ରସଦ (Ration)— କୌଣସି ଗ୍ରାମକୁ ସରକାରୀ କର୍ମଚାରୀ ତାଙ୍କ କର୍ତ୍ତବ୍ୟ କାର୍ଯ୍ୟ ନିମନ୍ତେ ଗଲେ ଗ୍ରାମର ଗୌନ୍ତିଆ ସେମାନଙ୍କୁ ଯାବତୀୟ ଖାଦ୍ୟ ଖର୍ଚ୍ଚ ଯୋଗାଇ ଦେବାକୁ ବାଧ୍ୟ ହେଉଥିଲେ । କେଉଁ ଶ୍ରେଣୀର କର୍ମଚାରୀ ନିମନ୍ତେ କି ପ୍ରକାରର ଖାଦ୍ୟ ସାମଗ୍ରୀ ଯୋଗାଇ ବାକୁ ହେବ ତାହା ଗୌନ୍ତିଆମାନଙ୍କ ପଟ୍ଟାରେ ତାଲିକାଭୁକ୍ତ ହୋଇ ରହି-ଅଛି । ଏହା ବ୍ୟତୀତ ଉପରୋକ୍ତ ଶିକାରୀ ଦଳ ଓ ହାତୀଧର କେମ୍ପ ମାନଙ୍କୁ ମଧ୍ୟ ଗୌନ୍ତିଆମାନେ ସେମାନଙ୍କର ଆଦେଶମତେ ରସଦ ଯୋଗାଇ ଦେଉଥିଲେ । ରାଜପରିବାର ଲୋକମାନଙ୍କୁ ମଧ୍ୟ । ଏହି ରସଦ ସାମଗ୍ରୀ ମଧ୍ୟରେ ଉହୁନା ଚାଉଳ, ବାସନା ଚାଉଳ, ଘିଅ, ଦୁଧ, ଛେନା ଅଣ୍ଡା, ତେଲ, ଅଟା, ମଇଦା ସହିତ ରନ୍ଧା ବଢ଼ା ଓ ପରଶିବା ଉପକରଣ ଗଉଡ, ମୂଲିଆ, ଚାକର ଇତ୍ୟାଦି ସହ ଘୋଡା ନିମନ୍ତେ ବିରି ଓ କୋଳଥ ଦାନା, ହାତୀ ନିମନ୍ତେ ଧାନ ଓ ଚାଉଳ ଦାନା ରୂପେ ମଧ୍ୟ ଯୋଗାଇ ଦେବାକୁ ପଡୁଥିଲା ।

୧୦) ସୁଖବାସୀ— ବାମଣ୍ଡାରେ ଯେଉଁମାନଙ୍କର ଜମିବାଡ଼ ନଥିଲା ସେମାନେ ଏ ରାଜ୍ୟର କର, କରତଳି, ବେଠି, ବେଗାଡ଼, ରସଦ, ମାଗଣ ପଞ୍ଜା ଇତ୍ୟାଦିରୁ ମୁକ୍ତି ପାଉଥିଲେ । ଏଣୁ ସେମାନେ 'ସୁଖବାସୀ' ଆଖ୍ୟା ପାଇଥିଲେ ହେଲେ ମଧ୍ୟ ସେମାନଙ୍କୁ ଡାକେଣି କାଠ ବାବଦକୁ ଗୋଟିଏ ବାର୍ଷିକ ଟିକସ ଦେବାକୁ ପଡୁଥିଲା । ତାର ନାମ "ଚୁଲିପଞ୍ଜା" । କମାର, ଖାତି; କୁମ୍ଭାର ଧୁବା କେଉଁଟ [ଯେଁମାନେ ମୁଢ଼ି ଭଜନ୍ତ ଓ ଚୁଡା କୁଟନ୍ତ] ତାଙ୍କଠାରୁ ମଧ୍ୟ ଗୋଟିଏ ବାର୍ଷିକ ଟେକ୍ସ ଅସୁଲ ହେଉଥିଲା ତାର ନାମ "ଶାଳ ପଞ୍ଜା" ।

୧୧) ପାସ ( License )—[କ] ଧନୁଶର ପାସ [ଖ] ଟାଙ୍ଗିଆ ପାସ [ଫଲସିଆ] [ଗ] ଖଣ୍ଡା ପାସ— ଯେଉଁମାନେ ଏହା ରଖୁଥିଲେ ସେମାନଙ୍କୁ ଏଥି ନିମନ୍ତେ ଟେକ୍ସ ଦେଇ [ପାସ] ଗ୍ରହଣ କରିବାକୁ ପଡୁଥିଲା ।

୧୨) ଖଳଚରି (Grazing Tax)— ପ୍ରଜା ହେଉ ବା ସୁଖବାସୀ ହେଉ ଯିଏ ଛେଳି, ଗାଈ, ବଳଦ, ପୋଢ଼, ଘୋଡ଼ା ଇତ୍ୟାଦି ରଖୁଥିଲେ ସେମାନଙ୍କୁ ମବେଶୀ ପ୍ରତି ଶ୍ରେଣୀ ଚଉଦରେ ଟ. ୦। [ଏକ ଅଣା] ଠାରୁ ଟ. ୧ ଙ୍କା ପର୍ଯ୍ୟନ୍ତ ବାର୍ଷିକ ଟିକସ ଦେବାକୁ ପଡୁଥିଲା । ଲୋକେ କହୁଥିଲେ ଯାହା ପେଟ ଭିତରକୁ ଯାଉଥିଲା ତାହା ନିଜର ବାକି ବାହ୍ୟ ବସ୍ତୁ ସବୁ ସରକାରଙ୍କର ।

" ଡାଲି ଭତ ତରକାରୀ ଆଉ ବାକି ସବୁ ସରକାରୀ "

ଏପରି ପରିସ୍ଥିତିରେ ବାମଣ୍ଡା ରାଜ୍ୟର ସୁପରିନ୍‌ଟେନ୍‌ଡେଣ୍ଟ H. Mecpherson ସାହେବ ସ୍ନ ୧୯୨୭-୨୮ ମଃରେ ବାମଣ୍ଡା ରାଜ୍ୟରେ ନୂତନ ଜମିଜମା ବନ୍ଦୋବସ୍ତ କରାଇଲେ ।

## ଖଜଣା ବନ୍ଦ ଆନ୍ଦୋଳନ :

ଗୌନ୍ତିଆ ଓ ପ୍ରଜାମାନେ ସ୍ନ ୧୯୨୯ ମଃ ଶେଷ ବେଳକୁ ଜମିର ନୂତନ ପଟ୍ଟାପାଇ ଦେଖିଲେ ଯେ ସେମାନଙ୍କର ଜମି ରାଜସ୍ୱ ହାରାହାରି ୪ ଗୁଣ ବଢ଼ିଛି । ତା ଉପରେ ପୁଣି ଟେକ୍‌ସ ଓ ଶେଷ-ଟଙ୍କା ପ୍ରତି [୧] ଜଙ୍ଗଲ ଶେଷ (ନିସ୍ତାର) ଟ. ୦। (ଏକ ଅଣା) [୨] କରଡଳି (ଏହା ପୂର୍ବ ବନ୍ଦୋବସ୍ତରେ ଋଉଳ, ମୁଗ ବ୍ରୀହି, କୋଳଥ, ଘିଅ ଓ ତେଲ ଆକା-ରରେ ନେଉଥିଲେ) ଟ. ୦। (ଏକଅଣା) [୩] ସ୍କୁଲ ଶେଷ ଟ. ୦/ ୪ ପାହୁଲା [୪] ବସାଣ (ଦେବୋତ୍ତର) ଟ ୦.୧ ପାହୁଲା [୫] ଚୌକିଦାରୀ ଟେକ୍‌ସ ୦ ୨ ପାହୁଲା । ଏହିପରି ଟଙ୍କା ପ୍ରତି ସର୍ବମୋଟ (ଦୁଇ ଅଣା ସାତ ପାହୁଲା) ଟେକ୍‌ସ ଧାର୍ଯ୍ୟ ହୋଇଅଛି ।

ଜଳସେଚିତ ହେଉନଥିବା ଭଲ ଜମି ଏକର ପ୍ରତି ରାଜସ୍ୱ ଟ ୩ ଙ୍କା ଓ ସମସ୍ତ ଟେକସ ହାରାହାରି ଟ ୦୮ (ଆଠଅଣା) ମୋଟ ଟ ୩୮ ଧାର୍ଯ୍ୟ ହୋଇଥିଲା । ସେତେବେଳେ ଟଙ୍କାକୁ ଋଉଳ ୩୦ ସେର ରୁ ୩୨ ସେର ଦରରେ ବିକ୍ରି ହେଉଥିଲା । (ବାଲେଶ୍ୱରୀ ସେର) ଓ ଧାନ ଟଙ୍କାକୁ ୪ ଖଣ୍ଡି = ଟ ୩୮ କୁ ଧାନ - ଖ ୧୪ଣ୍ଡି କୁ, ବର୍ତ୍ତମାନ ପ୍ରାୟ ଦୁଇ କ୍ୱିଣ୍ଟାଲ । ସେତେବେଳେ ବର୍ତ୍ତମାନ ପରି ଉନ୍ନତ ଋଷ ହେଉ ନଥିଲା । ସୁତରାଂ

ଚାଷ ଖର୍ଚ୍ଚ କାଟିଦେଲେ ଏକ ଏକଡ ଜମିର ଆମଦାନୀ ଧାନ ସେହି ଜମିର ରାଜସ୍ୱକୁ ନିଅଣ୍ଟ ପଡୁଥିଲା । ତା ଉପରେ ପୁଣି ବଜାରକୁ ବୋହି ନେବାର ଖର୍ଚ୍ଚ ପଡୁଥିଲା ।

ବୃଦ୍ଧି ରାଜସ୍ୱର ପୁନର୍ବିଚାର ନିମନ୍ତେ ବାମଣ୍ଡାର ୪/୫ ହଜାର ପ୍ରଜା ସଙ୍ଘବଦ୍ଧ ହୋଇ ପୋଲିଟିକେଲ୍ ଏଜେଣ୍ଟ ସମ୍ବଲପୁରଙ୍କ ନିକଟକୁ ଆପତ୍ତି କରିବାକୁ ଗଲେ । ଏମାନେ ସମ୍ବଲପୁର ମହାନଦୀ ପଠାରେ ଦୁଇଦିନ ପଡ଼ିରହି ପୋଲିଟିକେଲ୍ ଏଜେଣ୍ଟଙ୍କୁ ସାକ୍ଷାତ କରିବାକୁ ଚେଷ୍ଟାକଲେ କିନ୍ତୁ ସାକ୍ଷାତ ପାଇପାରିଲେ ନାହିଁ । ଦ୍ୱିତୀୟ ଦିନର ସଂଧ୍ୟାରେ ବାମଣ୍ଡା ସରକାରଙ୍କ ପଞ୍ଚମ ବାହିନୀ ଗୁପ୍ତରେ ପ୍ରଜାଙ୍କ ଭିତରେ ପ୍ରବେଶ କରି ପ୍ରଚାର କଲେ ଯେ ପରଦିନ ସକାଳୁ ସେଠାରେ ଗୁଳି ଚାଳିବ । ଏହା ଶୁଣି ପ୍ରଜାମାନେ ହତାଶ ହେଲେ ଓ ଚମ୍ପଟ ଦେଲେ । ଯେଉଁ କେତେଜଣ ମୁଖିଆ ପ୍ରଜା ଦମ୍ଭଧରି ରହିଲେ ୫ମ ବାହିନୀଙ୍କ ପ୍ରଚାର ବଳରେ ଧର୍ଯ୍ୟଚ୍ୟୁତ ଘଟିଲା । ସମସ୍ତେ ଦୁଃଖର ସହିତ ନିଜ ନିଜ ଘରକୁ ଫେରି କି ଉପାୟରେ ରାଜସ୍ୱ ଦେବେ ସେ ବିଷୟରେ ଚିନ୍ତା କଲେ ।

ସ୍ନ ୧୯୩୦ ମଃରେ ବୃଷ୍ଟିହୀନତା ହେତୁ ମରୁଡ ହେଲା । ରାଜ୍ୟର ଶତକଡା ଜଣେ ବା ଦୁଇଜଣ କିଣିଖିଆ ଚାକିରିଆ ଓ ସହର ବାସିନ୍ଦାଙ୍କ ସ୍ୱାର୍ଥକୁ ଜଗି ସରକାର ରାଜ୍ୟ ବାହାରକୁ ଧାନ ଓ ଚାଉଳ ରପ୍ତାନୀ କରିବା ବନ୍ଦ କରିଦେଲେ । ଚାଷୀମାନେ ବାଧ୍ୟ ହୋଇ ଟାଉନ୍‌ମାନଙ୍କରେ ରହୁଥିବା ବ୍ୟବସାୟୀ ଓ ରାଜକର୍ମଚାରୀଙ୍କ ଠାରେ ତାଙ୍କର (କିଣାଳିଙ୍କର) ମନ ମୁତାବକ ଦରରେ ବିକ୍ରି କଲେ । ଗାଁ ଗହଳିର କୃଷି ମୂଲିଆମାନେ ଧାନ ଆକାରରେ ମଜୁରୀ ପାଉଥିବାରୁ ସେମାନେ ଓ କୃଷକମାନେ ଏହାଦ୍ୱାରା ବିଶେଷ କ୍ଷତିଗ୍ରସ୍ତ ହେଲେ । ସରକାର ଧାନ ଚାଉଳ ରପ୍ତାନୀ ଉପରେ ଏପରି କଟକଣା କଲେ ଯେ କୌଣସି ବ୍ୟକ୍ତି ବାମଣ୍ଡା ରାଜ୍ୟ ବାହାରକୁ ଧାନ ଚାଉଳ ବିକ୍ରି କରିବାକୁ ନେଉଥିବାର ଧରାପଡ଼ିଲେ ଉକ୍ତ ଧାନ ବା ଚାଉଳ ଜପ୍ତ ହେବା ସଙ୍ଗେ ସଙ୍ଗେ ତାକୁ ଜେଲ ଜରିବାନା ମଧ୍ୟ ହେଉଥିଲା । ଫଳତଃ ବାମଣ୍ଡା ରାଜ୍ୟ ବାହାରେ ସମ୍ବଲପୁର ଇଲାକାରେ ଟଙ୍କାକୁ ୮ ସେର ଚାଉଳ ହୋଇଥିବା ବେଳେ ବାମଣ୍ଡାରେ ୩୨ ସେର ଚାଉଳ ଟଙ୍କାକୁ ମିଳୁଥିଲା । ପ୍ରଜାମାନେ କୌଣସି ପ୍ରକାରେ ରାଜସ୍ୱ ଦେଇ ପାରିଲେ ନାହିଁ ।

**ଦୁଙ୍ଗା ପିଟା ଶାସନ** ଯାହାକୁ କହନ୍ତି ଏହି ସମୟରେ ଘୋର-ଘୋର ଚାଲିଲା— ବାମଣ୍ଡା ରାଜ୍ୟରେ । ରାଜସ୍ୱ ବିଭାଗ ବା ଅନ୍ୟ ଯେ କୌଣସି ବିଭାଗର ନିର୍ଦ୍ଦୟ ଅତ୍ୟାଚାରୀ, ହୃଦୟହୀନ କର୍ମଚାରୀମାନେ ଦଳବାନ୍ଧି ଗ୍ରାମକୁ ଗ୍ରାମ ରାଜସ୍ୱ ଅସୁଲ କରିବାକୁ ବାହାରିଲେ ରାଜ୍ୟର ସର୍ବୋପରିସ୍ଥ ହାକିମଙ୍କ ହୁକୁମରେ । ଗ୍ରାମ ଗୌନ୍ତିଆ, ପ୍ରଧାନ ବା ସର୍ବକାର ମାନେ ପଟ୍ଟା ସର୍ତ୍ତାନୁଯାୟୀ ପ୍ରଜାମାନଙ୍କଠାରୁ ରାଜସ୍ୱ ଅସୁଲ କରି ରାଜ୍ୟର ଖଜଣା ଖାନାରେ ବୁଝାଇବା ନିୟମ ଥାଏ । ଏଥି ନିମନ୍ତେ ଗ୍ରାମର ସର୍ବରାକାର (ଗୌନ୍ତିଆ) ମାନେ ନିଷ୍କର ଜମି (ଭୋଗରା) ସରକାରଙ୍କଠାରୁ ଭୋଗ କରୁଥିଲେ । ପ୍ରଜାମାନେ ଉପରଲିଖିତ କାରଣ ଦୃଷ୍ଟେ ରାଜସ୍ୱଦେଇ ପାରୁନଥିବାରୁ ଗୌନ୍ତିଆମାନେ ରାଜସ୍ୱ ବୁଝାଇ ପାରିଲେ ନାହିଁ ।

ଗୌନ୍ତିଆ ମାନଙ୍କର ଅସ୍ଥାବର ସମ୍ପତ୍ତି ଯଥା— ତାଙ୍କର ସ୍ତ୍ରୀ, ଝିଅ, ପୁଅମାନେ ପିନ୍ଧିଥିବା ଗହଣା ଖାଇବା ବାସନ ଗଡୁ, ଗିନା, ଗରା, ହଣ୍ଡା ପ୍ରଭୃତି ପିତଳ ଓ କଂସା ବାସନ, ବାକ୍ସ, ଆଲମିରା ଘରରେ ଲାଗିଥିବା କବାଟ, ଦ୍ୱାରବନ୍ଧ, ଶଗଡ ପ୍ରଭୃତି କାଠ ସାମଗ୍ରୀ, ଗାଈ, ଫଡା ଗୋରୁ, ପୋଢ, ଧାନ; ଚାଉଳ ପ୍ରଭୃତି ଘରେ ପଶି ଜବରନ ବାହାର କରି ଆଣୁ-ଥିଲେ ଓ ଖଜଣା ବାବଦକୁ ଉକ୍ତ ଜିନିଷ ସବୁ ଜପ୍ତ ହେଲା ବୋଲି ଶୁଣାଇ ଦେଉଥିଲେ । ଯେଉଁ ଗରିବ ପ୍ରଜାଙ୍କ ଘରୁ ଉପରୋକ୍ତ ଜିନିଷ ମଧ୍ୟରୁ କିଛି ବାହାରିଲା ନାହିଁ ସେମାନେ ଅନ୍ୟତ୍ର ଲୁଚାଇଥିବାର ସଂଦେହ କରି ବୁଧବାରୀ ଓ ଗୁରୁବାରୀ ନାମକ ଦୁଇଗୋଟା ପଥର ପ୍ରାୟ ୧୦ କିଲୋଗ୍ରାମ ଓଜନର ଦୁଇହାତରେ ବୋହାଇ ଖରାରେ ଛିଡା କରାଇ ଦେଉଥିଲେ ଜାହାକୁ ଖରାରେ ବସାଇ ଥପା (ପୋଲୁଅ) ବାଟି ତା ଉପରେ ଗୋଟିଏ ଓଜନଦାର ପଥର ଜାକି ଦେଉଥିଲେ ଓ କାଈ (White ants) ଖାଡ ଦେଉଥିଲେ । କାହାରି କାହାରି ଅଣ୍ଡକୋଷରେ ୨/୩ କିଲୋଗ୍ରାମ ଓଜନର ପଥର ଓହଳାଇ ଦେଇ ଖରାରେ ଛିଡା କରି ଦେଉଥିଲେ । ସଙ୍ଗେ ସଙ୍ଗେ ପୁଲିସ ପହରା ହଲଚଲ ହେଲେ ବା ପାଟି ଫିଟାଇଲେ ସେମାନଙ୍କ ଉପରେ ବେତ୍ରାଘାତ ହେଉଥିଲା । ଏହି ଦଳ କୌଣସି ଗ୍ରାମକୁ ପ୍ରବେଶ କଲେ ଉକ୍ତ ଗ୍ରାମର ରାଜସ୍ୱ ବାକିଦାର ପ୍ରଜାମାନେ ଲୁଚି ହିଂସ୍ର ଜନ୍ତୁ ପୂର୍ଣ୍ଣ ଜଙ୍ଗଲ ଓ ପାହାଡକୁ ଚାଲିଯାଉଥିଲେ ଓ ଗଛ ଉପରେ ରାତ୍ରି ଯାପନ

କରୁଥିଲେ । ଏହି ପରିସ୍ଥିତିର ସମ୍ମୁଖୀନ ହୋଇ ଅନେକ ପ୍ରଜା ତାଙ୍କର ପୈତୃକ ଭୂ-ସମ୍ପତ୍ତି ଗୌନ୍ତିଆ ମାନଙ୍କଠାରେ ଇସ୍ତଫା ଦେଇ ସୁଖବାସୀ (ଜମିହୀନ) ହୋଇ ରହିଲେ ।

ଯେଉଁମାନେ ପିତୃ ଅର୍ଜିତ ଜମିର ମୋହ ଏଡ଼ ପାରିଲେ ନାହିଁ ସେମାନେ ତାଙ୍କର ସ୍ଥାବର ସଂପତ୍ତି ବିକ୍ରି କରି ଗଡ଼ଜାତ ଦେଇ ଚଳି ଚଳାନ୍ତ ହେଲେ ।

ଏହି ପରିପ୍ରେକ୍ଷୀରେ ସ୍ନ ୧୯୩୧ ମାର୍ଚ୍ଚ ମାସରେ କୁଚିଣ୍ଡା ସବ୍‌ଡିଭିଜନର ବିଶିଷ୍ଟ ଗୌନ୍ତିଆ :—

୧- ଗୋବର୍ଦ୍ଧନ ଗୌନ୍ତିଆ —ସାତକମା (ଲେଖକର ପିତା)

୨- ରୂପଧର ,, —ଜମନକିରା (କୁସୁମୀ)

୩- ସପ୍ନେଶ୍ୱର ,, — ,, ,,

୪- ବୃନ୍ଦାବନ ,, —ଲଡ଼, ୫- ହରେରାମ ଗୌନ୍ତିଆ, ରାମ-ଟିଲେମାଲ୍, ୬- ଅର୍ଜ୍ଜୁନ ମୋହନ ଗୌନ୍ତିଆ, ପାରୁଆଭଡ଼ ୭- ଗଇସିଂ ଗୌନ୍ତିଆ ଓ ୮- ହରିଚନ୍ଦନ ଗୌନ୍ତିଆ, ମହୁଲପାଲି ଆଦିଙ୍କୁ ଓ୍ୱାରେଣ୍ଟ ଯୋଗେ କୁଚିଣ୍ଡାକୁ ଧରିଆଣି ତତ୍‌କାଳିନ ନାଜିର ଢେଡାରେ ନଜର କଏଦୀ ହିସାବରେ ରଖିଲେ । ସରକାରଙ୍କ ତରଫରୁ ତାଙ୍କୁ ଖାଇବାକୁ ଦିଆଗଲା ନାହିଁ । ସେମାନେ ନିଜଖର୍ଚ୍ଚରେ ନିଜେ ରନ୍ଧ ଖାଇଲେ । ଏହିପରି ୧୨ ଦିନ ବ୍ୟତିକ୍ରମ ହେବାପରେ ଉପରୋକ୍ତ ଗୋବର୍ଦ୍ଧନ ଗୌନ୍ତିଆଙ୍କ ଦୁଇପୁତ୍ର (୧) ଭଗୀରଥି (୨) ବୃନ୍ଦରାୟ, (୩) ଇରଦତ୍ ହୁସେନ୍ [କୁଚିଣ୍ଡା ଚମଡ଼ା ଠିକାଦାରଙ୍କ ମୁନସି (୪) ଦୟାନନ୍ଦ ଶତପଥୀ ତତ୍‌କାଳିନ ପାରୁଆଭଡ଼ ଗ୍ରାମ ବାସିନ୍ଦା (୫) ଦାଶରଥି ମିଶ୍ର, ରମଝାଲି [କୁଚିଣ୍ଡା ସବ୍-ଡଭିଜନାଲ ଅଫିସର ଜନୈକ କିରଣୀ] (୬) ପଦ୍ମନାଭ ପଣ୍ଡା, କୁଚିଣ୍ଡା ସ. ଡ ଅଫିସର ଖଜାଞ୍ଚି Treasurer] (୭) ବୁନେଲାଲ୍-କୁଚିଣ୍ଡାର ଜନୈକ ମାରଓ୍ୱାଡ ବ୍ୟବସାୟୀ ଏମାନେ କୁଚିଣ୍ଡାର ଜନୈକ ମାରଓ୍ୱାଡ ବ୍ୟବସାୟୀ ଏମାନେ କୁଚିଣ୍ଡାରେ ଗୋଟିଏ ଗୁପ୍ତ ବୈଠକ କରି ଉପରୋକ୍ତ ଗୌନ୍ତିଆମାନଙ୍କୁ ସରକାର ବନ୍ଦୀ ହିସାବରେ ରଖି ମଧ୍ୟ ଖାଇବାକୁ ଦେଉ-ନଥିବା ବିଷୟ ଗଭର୍ଣ୍ଣର ବିହାର ଓଡ଼ଶା, ପାଟଣାକୁ ଟେଲିଗ୍ରାମ ଯୋଗେ ଜଣାଇବା ସ୍ଥିର କଲେ । ଉକ୍ତ ଟେଲିଗ୍ରାମ ଶ୍ରୀ ଇରଦତ୍ ହୁସେନ

ଇଂରାଜୀରେ ଲେଖିଲେ । ଶ୍ରୀ ବୃନ୍ଦାବନ ରାୟ ପଙ୍କେ ସଙ୍ଗେ ଘୋଡାରେ ଝାରସୁଗୁଡା ଯାଇ ଷ୍ଟେସନ ମାଷ୍ଟରଙ୍କୁ ଫିସ୍‌ଦେଇ ଟେଲିଗ୍ରାମ କରିଦେଲେ । (ବୋଧହୁଏ R.M.S.ରୁ) ଦୁଇଦିନ ଉତ୍ତାରେ ଗଭର୍ଣ୍ଣରଙ୍କ ଠାରୁ ଆଦେଶ ଆସିଲା ଯେ, ଗୌନ୍ତିଆମାନଙ୍କୁ ଜେଲ ହାଜତରେ ରଖି ଦୈନିକ ଖାଦ୍ୟ ଖର୍ଚ୍ଚ ବାବଦକୁ ଜଣପ୍ରତି ୩ ଟଙ୍କା ଲେଖାଏଁ ଦେବାକୁ । ସେମାନେ ଜଣେ ରନ୍ଧୁଣିଆ ରଖି ଜେଲଖାନା ଭିତରେ ସ୍ୱତନ୍ତ୍ର ଘରରେ ରନ୍ଧାଇ ଖାଉଥିଲେ ଓ ସେମାନଙ୍କ ଘରୁ କୌଣସି ଖାଦ୍ୟ ଜିନିଷ ଆସିଲେ ତାହା ଡାକ୍ତରଙ୍କ ଦ୍ୱାରା ପରୀକ୍ଷା-କରାଇ ଖାଇବାକୁ ଦିଆଯାଇ ପାରୁଥିଲା ।

ଗୌନ୍ତିଆମାନେ ଜେଲଖାନାରେ ରହିବା ତୃତୀୟ ଦିନ ବୃନ୍ଦାବନ ରାୟ ତାଙ୍କ ପିତା ଗୋବର୍ଦ୍ଧନଙ୍କ ନିମନ୍ତେ ପାତକମାରୁ ଓ ଖଗେଶ୍ୱର ନାୟକ ତାଙ୍କ ବଡ ଭାଇ ବୃନ୍ଦାବନଙ୍କ ନିମନ୍ତେ ଲଡ ଗ୍ରାମରୁ ଜଳଖିଆ ଆଣି କୁଚିଣ୍ଡା ଡାକ୍ତର ଭବାନୀକାନ୍ତ ଚକ୍ରବର୍ତ୍ତୀଙ୍କ ଦ୍ୱାରା ପରୀକ୍ଷା କରାଇ ସାର୍ଟିଫିକେଟ ଧରି ଜେଲଫାଟକକୁ ଗଲେ ସେଠାରେ ବୃଟିଆ ନାମକ ଜଣେ ଜେଲ ଓ୍ୱାର୍ଡର ଏମାନଙ୍କ ଜଳଖିଆ ଭିତରକୁ ନେବାକୁ ମନା କରିଦେଲା । ଏଣୁ ବୃନ୍ଦାବନ ରାୟ ଓ ଓ୍ୱାର୍ଡର ମଧ୍ୟରେ ଜୋର ଝଗଡା ଲାଗିଲା । ଓ୍ୱାର୍ଡର ଏମାନଙ୍କୁ ଗୁଳି କରିଦେବାକୁ ଉଦ୍ୟମ କରିବାରୁ ଏମାନେ ସେଠାରୁ ଚାଲି ଆସିଲେ । ଓ୍ୱାର୍ଡର ଜୋଟକୁ ଯାଇ ଜେଲ ସୁପରିନ୍‌ଟେନ୍‌ଡେଣ୍ଟ ଅଦ୍ୱୈତ ଚରଣ ମହାନ୍ତି ଓ ମାଜିଷ୍ଟ୍ରେଟ ନିକଟରେ ରିପୋର୍ଟ କଲେ । ଉକ୍ତ ମାଜିଷ୍ଟ୍ରେଟ ବୃନ୍ଦାବନ ରାୟକୁ ଧରିଆଣିବାକୁ ଉକ୍ତ ଓ୍ୱାର୍ଡରଙ୍କୁ ଆଦେଶ କଲେ । ସେହି ସମୟରେ ବୃନ୍ଦାବନ ରାୟ କୁଚିଣ୍ଡା ମଦନ ମୋହନ ଶର୍ମାଙ୍କ ପିଣ୍ଡାରେ ବସିଥିଲେ । ଓ୍ୱାର୍ଡର ସେଠାକୁ ଆସି ତାଙ୍କ ହାତଧରି ଟାଣିଲା । ଏଥିରେ ସେ ଉତ୍ତ୍ୟକ୍ତ ହୋଇ ବିନା ଓ୍ୱାରେଣ୍ଟରେ ମୁଁ ଯିବିନାହିଁ କହି ଓ୍ୱାର୍ଡରକୁ ଧକ୍କା ଦେଇ ହାତ ଛଡାଇ ଆଣିଲେ । ପୁନଶ୍ଚ ସେ ଏହି ବିଷୟ ସେ ଉକ୍ତ ମାଜିଷ୍ଟ୍ରେଟଙ୍କୁ ଜଣାଇଲେ । ମାଜିଷ୍ଟ୍ରେଟ କୋର୍ଟର ମୋହର ଦେଇ ତାଙ୍କ ସମ୍ମୁଖରେ ଉପସ୍ଥିତ ହେବାକୁ ଖଣ୍ଡେ ଆଦେଶନାମା ଲେଖିଦେଲେ । ଉକ୍ତ ଆଦେଶନାମା ପାଇ ବୃନ୍ଦାବନ ରାୟ ଉକ୍ତ କୋର୍ଟକୁ ଗଲେ । ଯିବାମାତ୍ରେ ତୁମେ କାହିଁକି ଜେଲ ଫାଟକରେ ଗୋଳମାଳ କରୁଥିଲ ବୋଲି ପଚାରିବାରୁ ସେ ଉପରୋକ୍ତ ବିଷୟମାନ ସବୁ କହିଲେ— ଏହା ଶୁଣି ମାଜିଷ୍ଟ୍ରେଟ କହିଲେ— "ସେ ତୁମ୍ଭଙ୍କୁ ଲାଞ୍ଛି

ନଦେଇ ଭୁଲ କଲ" । ଏତିକିରେ ସେ କୋର୍ଟ ଉପରକୁ ଉଠିଯାଇ ନିଜର ଛାତି ଦେଖାଇ କହିଲେ, "ସେ ଯଦି ଭୁଲ କଲା ଆପଣ ଗୁଳି ଦିଅନ୍ତୁ ।" ଏତିକିରେ ସେ ଭୟଭୀତ ହୋଇ ଅନ୍ୟ ପଟେ ଡେକ ଉପରୁ ଡେଇଁ ଏସ୍. ଡ. ଓ ଙ୍କ ନିକଟକୁ ଦୌଡଗଲେ ଓ ତାଙ୍କଠାରେ ଏ ବିଷୟ ରିପୋର୍ଟ କଲେ । ପୁନଶ୍ଚ ସେ ବୃଦ୍ଧଗୟଙ୍କୁ ଡକାଇଲେ । ସେ ଆସିଲେ, କୋର୍ଟରେ ଉତ୍ତର ପ୍ରତ୍ୟୁତ୍ତର ହେଲା କିନ୍ତୁ କୌଣସି ମୀମାଂସା ହୋଇ ନପାରିବାରୁ ପୁଲିସ ସବ୍-ଇନ୍ସପେକ୍ଟର ନିତ୍ୟାନନ୍ଦ ସାହୁଙ୍କୁ ଏ ବିଷୟ ତଦନ୍ତ କରି ରିପୋର୍ଟ କରିବାକୁ କହିଲେ—ଅପରାହ୍ଣ ୩ଟା ବେଳେ । ଜେଲ୍ ଫାଟକରେ ଝଗଡା ସକାଳ ୭ ଟା ବେଳର ଘଟଣା । ଏହି ସମ୍ବାଦ ନିକଟସ୍ଥ ଗ୍ରାମ-ମାନଙ୍କରେ ପ୍ରଚାର ହୋଇଗଲା । ଶ୍ରୀ ଦୟାନନ୍ଦ ଶତପଥୀଙ୍କ ପ୍ରେରଣାରେ ନିକଟସ୍ଥ ଗ୍ରାମମାନଙ୍କରୁ ପ୍ରାୟ ଏକ ହଜାର ପର୍ଯ୍ୟନ୍ତ ଯୁବକ ଅପରାହ୍ନ ୪ଟା ବେଳେ ଜେଲ ଭଙ୍ଗି ଗୌନ୍ତିଆମାନଙ୍କୁ ଜେଲରୁ ବାହାର କରି ଆଣିବାର ମନ୍ତ୍ରଣା ହେଲା । ଏକଥା କୁଚିଣ୍ଡା ଗ୍ରାମରେ ହୁଲସ୍ଥୂଳ ପଡ଼ିଗଲା । କୁଚିଣ୍ଡା ସ୍କୁଲ ଛାତ୍ରମାନେ ଧର୍ମଘଟ କଲେ । ଏହି ସମୟରେ ନିତ୍ୟାନନ୍ଦ ସାହୁ ଅନେକ ମଧ୍ୟସ୍ଥଙ୍କୁ ଲଗାଇ ସମସ୍ତ ବିଷୟ ଶାନ୍ତିପୂର୍ଣ୍ଣ ଉପାୟରେ ସମାଧାନ କଲେ । ଗୌନ୍ତିଆମାନଙ୍କୁ ପରଦିନ ସକାଳୁ ଛାଡ଼ଦେବାର ପ୍ରସ୍ତାବ କଲେ ଓ ଛାଡଦେଲେ । ଉପରୋକ୍ତ ଗୌନ୍ତିଆ ଓ ଗୁପ୍ତ ମନ୍ତ୍ରଣାକାରୀ ଗଣ ଧାର୍ଯ୍ୟ ଗଡଜାତ ପୁନର୍ବିଚାର କରି ଅର୍ଦ୍ଧେକ ଛାଡ ନହେବା ପର୍ଯ୍ୟନ୍ତ ଗଡଜାତ ନଦେବାକୁ ପ୍ରଜାମାନଙ୍କୁ ପ୍ରବର୍ତ୍ତାଇଲେ ।

ଏହି ସମ୍ବାଦ ସେତେବେଳେ ସମାଜ ପତ୍ରିକାରେ ବାହାରୁ ଥାଏ । ଏହାର ମୁଖ୍ୟ ସମ୍ବାଦ ଦାତା ଥିଲେ ଭଗୀରଥି ଗୌନ୍ତିଆ ସାତକମା, ଦୟାନିଧି ପାଣିଗ୍ରାହୀ, ବୁବୁନ୍ଲପାଲି ଓ ଦୟାନନ୍ଦ ଶତପଥୀ । ଭଗୀରଥି ଓ ଦୟାନିଧି ତାଙ୍କର ସମ୍ବାଦ ଝାରସୁଗୁଡା ବା ଲଇକେର ପୋ. ଅ.ରୁ ପଠାନ୍ତି । ବାମଣ୍ଡାରେ ଯେତେ ବ୍ରାଞ୍ଚ ପୋଷ୍ଟ-ମାଷ୍ଟର ଥିଲେ କୁଚିଣ୍ଡା ସମେତ ସମସ୍ତେ ଷ୍ଟେଟ ଅଧୀନରେ କାର୍ଯ୍ୟ କରୁଥିବା ଶିକ୍ଷକ କେବଳ ବାମଣ (ଗୁବିନ୍ଦପୁର) ଓ ଦେବଗଡରେ ୨ଟା ସବ୍ ପୋ ଅ. ଥିଲା ଓ ସେ ସ୍ଥାନ ଦ୍ୱୟର ପୋଷ୍ଟ-ମାଷ୍ଟର ଦ୍ୱୟ ଭରତ ସରକାରଙ୍କ ଦ୍ୱାରା ନିଯୁକ୍ତ କିନ୍ତୁ ଏ ଦୁହେଁ ମଧ୍ୟ ରାଜ୍ୟ ଭିତରେ ରହୁଥିବାରୁ ଓ ସରକାରଙ୍କ ତରଫରୁ ଅନେକ କିଛି ସୁବିଧା

ପାଉଥିବାରୁ ତାଙ୍କ ପ୍ରତି ବେଶ ଅନୁରକ୍ତ ଥିଲେ । ବ୍ରାଞ୍ଚ ପୋଷ୍ଟ-ମାଷ୍ଟରଙ୍କ କଥା ବା କ'ଣ କହିବା । ଦୟାନନ୍ଦ ରାଜ୍ୟ ସରକାର ପ୍ରଜାଙ୍କ ପ୍ରତି କରୁଥିବା ନାନାଦି ଅନ୍ୟାୟ ବିଷୟ 'ସମାଜ'କୁ ଲେଖୁଥିଲେ । ବାମରା ପୋଷ୍ଟ-ମାଷ୍ଟର ସେ ସବୁ ପତ୍ର ରଖି ବାମଣ୍ଡା ପୁଲିସକୁ ଦେଇଦେଲେ ।

ଲମ୍ବୋଦର ନାୟକ ନି: ସାହାଡବାହାଲ ଦୟାନନ୍ଦଙ୍କ ସହ ମିଶି ପ୍ରଜାଙ୍କୁ ରାଜସ୍ୱ ନଦେବାକୁ ପ୍ରବର୍ତ୍ତାଉ ଥିଲେ । ଲମ୍ବୋଦରଙ୍କୁ ମଧ୍ୟ ସରକାର ହାତ କରିନେଲେ ଓ ତାଙ୍କଠାରୁ ଦୟାନନ୍ଦଙ୍କ ସମସ୍ତ କାର୍ଯ୍ୟକଳାପର ତଥ୍ୟ ସଂଗ୍ରହ କଲେ । ରାଜ୍ୟର କର୍ମଚାରୀ ଦାଶରଥି ମିଶ୍ର ଓ ପଦ୍ମନାଭ ପଣ୍ଡା ପ୍ରଜାଙ୍କୁ ରାଜସ୍ୱ ନଦେବାକୁ ପ୍ରବର୍ତ୍ତାଉଥିବା କଥା ସରକାର ଉକ୍ତ ଲମ୍ବୋଦର ଙ୍କ ଠାରୁ ଜାଣିଲେ । ଏମାନଙ୍କ ନାମରେ ରାଜ୍ୟ ବିରୁଦ୍ଧରେ ଷଡଯନ୍ତ୍ର କରୁଥିବା ଅପରାଧରେ ମକଦ୍ଦମା ହେଲା । ଏ ବିଷୟ ଦେବଗଡ ସଦର ମଙ୍ଗିଷ୍ଟ୍ରେଟଙ୍କୁ ନ ବ୍ୟାପିବା ମତଲବରେ ଉକ୍ତ ମକଦ୍ଦମା State Suptd. H. Mecpherson କୁଚିଣ୍ଡାରେ ବିଚାର କଲେ । ଏହା ସନ ୧୯୩୧ ମଇ ଜୁନ୍ ମାସର ଘଟଣା । ଦାଶରଥି ମିଶ୍ର ଓ ପଦ୍ମନାଭ ପଣ୍ଡାଙ୍କୁ ତାଙ୍କର ଚାକିରିରୁ ବରଖାସ୍ତ କଲେ ଓ ସେମାନଙ୍କ Provident Fund ବାଜ୍ୟାପ୍ତ କଲେ । ଦୟାନନ୍ଦଙ୍କୁ ୩ ଘଣ୍ଟା ମଧ୍ୟରେ ବାମଣ୍ଡା ଛାଡ ଚାଲିଯିବାକୁ ଆଦେଶ ହେଲା । ତାର ଉତ୍ତରରେ ଦୟାନନ୍ଦ ଉତ୍ତର ଦେଲେ "ଆପଣ ରାଜତ୍ୱ କରୁଥିବା ପର୍ଯ୍ୟନ୍ତ ଏହି ବାମଣ୍ଡା ରାଜ୍ୟରେ ପାଣି ପିଇବାକୁ ମଧ୍ୟ ଚାହେଁ-ନାହିଁ । ସେତେବେଳେ ତାଙ୍କ ପିଲାଟୁଆ ପାରଆଉଡରେ ରହୁଥିଲେ, କିନ୍ତୁ ସେଠାରୁ ସେ ପାରୁଆଉଡ ଗ୍ରାମକୁ ନଯାଇ ଜୁନ ମାସ ସକାଳ କଚେରୀ ଶେଷ ୧୨ ଟା ସମୟରେ ସେ କୁଚିଣ୍ଡାରୁ ସାତକମା, କୁଟୁରାଚୁଆ ଓ ପୁରୁଣାପାଣି ହୋଇ ବାମଣ୍ଡା ସୀମା ପାରହୋଇ ସମ୍ବଲପୁର ଇଲାକା ଲଇଡା ମୌଜାକୁ ଚାଲି ଚାଲି ଅପରାହ୍ନ ୩ ଟା ସମୟରେ ପହଞ୍ଚିଲେ ସେ ସ୍ଥାନର ଲୋକେ ବିଶେଷକରି କଂଗ୍ରେସ କର୍ମୀ ରାଜୀବ ଲୋଚନ ତେୱାରୀ, ନନ୍ଦରାମ ପଟେଲ ପ୍ରଭୃତି ସେଠାରେ ରହିବାକୁ ଅନୁରୋଧ କଲେ କିନ୍ତୁ ସେଠାରେ ନରହି ହିଂସ୍ର ଜନ୍ତୁ ପରିପୂର୍ଣ୍ଣ ଲୁହାଖଣି, ଝରଘାଟି, ଗୁମଲେ ପ୍ରଭୃତି ଘୋର ଅରଣ୍ୟମୟ ଯେଉଁ ରାସ୍ତା ଦିନବେଳେ ମଧ୍ୟ ଦୁଇଜଣ ବ୍ୟକ୍ତି ଚାଲି ଚାଲି ଭୟ କରୁଥିଲେ ସେ ଏକାକୀ ରାତ୍ରି ସମୟରେ ଅତିକ୍ରମ କରି ସକାଳେ

ସମ୍ବଲପୁର ସହରରେ ପହଞ୍ଚିଗଲେ । ସେଠାରେ ସେ ସ୍ୱନାମ ଧନ୍ୟ ଶ୍ରୀ ନୃସିଂହ ଗୁରୁ ଓ ଅନ୍ୟାନ୍ୟ କଂଗ୍ରେସ କର୍ମୀଙ୍କ ସଂସ୍ପର୍ଶରେ ଆସି ଜିଲ୍ଲା କଂଗ୍ରେସ ଅଫିସ ସେକ୍ରେଟେରୀ ହେଲେ ଓ ପରେ ଜିଲ୍ଲା କଂଗ୍ରେସ କମିଟୀର ସାଧାରଣ ସଂପାଦକ ହେଲେ ଓ ସମ୍ବଲପୁର ଜିଲ୍ଲା କଂଗ୍ରେସକୁ ନିୟନ୍ତ୍ରଣ କଲେ ।

ସନ୍ ୧୯୨୮ ମସିହାରେ ଦୟାନନ୍ଦ ବାମଣ୍ଡା ସରକାରଙ୍କ ସମାଲୋଚନା କରିଥିବାରୁ କୁଚିଣ୍ଡା M.V. ସ୍କୁଲରୁ ଡସ୍‌ମିସ୍ ହୋଇଥିଲେ । ପରେ ସେ ଆସି ପାଉଆଭଡ଼ରେ ରହୁଥିଲେ । ସେଠାରୁ ମଧ୍ୟ ସେ ରାଜ୍ୟାନ୍ତର ହେଲେ । ଏହି ସମସ୍ତ ଘଟଣାରେ କୁଚିଣ୍ଡା M.V. ସ୍କୁଲ ଛାତ୍ରମାନେ ଛାତ୍ରନେତା ଶ୍ରୀ ଦଶରଥ ନାୟକ ନି: ସାହାଡବାହାଲ ଓ ଶ୍ରୀ ରାଧା ବଲ୍ଲଭ ମହାପାତ୍ର ନି. କିରଣାସନଙ୍କ ନେତୃତ୍ୱରେ ଧର୍ମଘଟ କଲେ । ଏହି ଧର୍ମ-ଘଟରେ କୁଚିଣ୍ଡାର ବାଳମକୁନ୍ଦ ରାୟ ଅଣଛାତ୍ର ବିଶେଷ ସହଯୋଗ କରିଥିଲେ । କୁଚିଣ୍ଡା ସ୍କୁଲ ଛାତ୍ର ଲକ୍ଷ୍ମଣ ଗୌଡ, ଗୁରୁଚରଣ ମହାନ୍ତ; କିରଣାସନର ରତ୍ନଧାରୀ ମହାପାତ୍ର ଓ ଯୁଧିଷ୍ଠିର ମହାପାତ୍ର, ଘୋଷା ଗ୍ରାମର ମନବୋଧ ପଟେଲ, ଯୋଗେଶ୍ୱର ପଟେଲ, ସୁଦର୍ଶନ ନାୟକ, କରୁଣାକର ନାୟକ, ସଇଡା ଗ୍ରାମର ନରହରି ସେଠୀ ଓ ହିରଧର ସାହୁ, ମହଦାର କରୁଣାକର ନାୟକ, ଝିଞ୍ଜିପାଲିର ଗୁଚିଦରାମ ପଟେଲ, ଥାନ ମୁଣ୍ଡାଲୋଇର ରଘୁନାଥ ନାୟକ ଓ ଅନ୍ୟାନ୍ୟ କୁଚିଣ୍ଡା M.V. ସ୍କୁଲ ଛାତ୍ରମାନେ ଯୋଗ-ଦେଇଥିଲେ । ଏମାନେ ସମସ୍ତେ ସ୍କୁଲକୁ ନଯାଇ କୁଚିଣ୍ଡା ଜଗନ୍ନାଥ ମନ୍ଦିରରେ ଏକତ୍ରିତ ହୋଇ ଭଗବତ୍ ହୁସେନ୍‌ଙ୍କ ରଚିତ ଜାତୀୟ ସଙ୍ଗୀତ ଗାନ କରିଥିଲେ ଓ ମହାତ୍ମାଗାନ୍ଧୀଙ୍କ ଜୟ ନାଦ ଦେଇଥିଲେ । ଏହି ସମ୍ବାଦ କୁଚିଣ୍ଡା ପୁଲିସ ସବ୍‌ଇନସପେକ୍ଟର ନିତ୍ୟାନନ୍ଦ ସାହୁ ପାଇ କେତେକ ପୁଲିସ କନ୍‌ଷ୍ଟେବଳଙ୍କୁ ସାଙ୍ଗରେ ନେଇ ଏହି ଛାତ୍ରମାନଙ୍କୁ ସ. ଡ. ଅ. ବସନ୍ତ କୁମାର ବହିଦାରଙ୍କ କୋର୍ଟକୁ ଧରିଆଣିଲେ ସେଠାରେ ଛାତ୍ରମାନଙ୍କୁ ଖୁବ୍ ବଡ ପାଟିରେ ଧମକ ଦେଲେ ଓ ସ୍କୁଲ ସବ୍‌ଇନ୍‌ସପେକ୍ଟର ସଦାଶିବ ମହାପାତ୍ରଙ୍କୁ ଡକାଇ ତାଙ୍କୁ ଜିମା ଦେଲେ । ସ୍କୁଲ ଓସ୍. ଆଇ. ଏମାନଙ୍କୁ ସ୍କୁଲକୁ ନେଇ ହେଡମାଷ୍ଟର ନୀଳମଣି ମହାପାତ୍ରଙ୍କ ଜିମା ଦେଲେ ଓ ପ୍ରତ୍ୟେକଙ୍କୁ ପରୁରିଲେ । ଦଶରଥ ଓ ରାଧାବଲ୍ଲଭ ନେତୃତ୍ୱ ନେଇଥିବା

ମୁକ୍ତ କଣ୍ଠରେ ସ୍ୱୀକାର କଲେ । ଏ ବିଷୟ ସୁପରିନ୍‌ଟେଣ୍ଡେଣ୍ଟ H. Mecpherson ଙ୍କ ନିକଟକୁ ରିପୋର୍ଟ ହେଲା । ସେ ଏହି ସ୍କୁଲ ଛାତ୍ରଙ୍କୁ ରଷ୍ଟିକେଟ କରିବାକୁ ଆଦେଶ ଦେଲେ । ସେମାନେ ସେହିଦିନ-ଠାରୁ ସ୍କୁଲ ପରିତ୍ୟାଗ କଲେ ।

ଏହି ସମୟରେ ମହାତ୍ମାଗାନ୍ଧୀଙ୍କ ବିଦେଶୀ ବସ୍ତ୍ର ବର୍ଜନ ଡାକରା ଏହି ବାମଣ୍ଡା ରାଜ୍ୟରେ ପ୍ରବେଶ କରିଥିଲା । ଏହି ରାଜ୍ୟର କୁଚିଣ୍ଡା ଓ ରୁଚିଦପୁର ସ:ଡ:ରେ ଆଗରିଆମାନେ କପା ଋଷ କରି ସୂତା କାଟୁଥିଲେ । ତନ୍ତୀମାନେ ଦେଶୀ ତନ୍ତରେ କପଡା ବୁଣୁଥିଲେ; ବଜାରରେ ସେହି କପଡା ବିକ୍ରି ହେଉଥିଲା । ଆଗରିଆ ତଥା ସର୍ବସାଧାରଣ ସ୍ତ୍ରୀ ପୁରୁଷ ସେହି କପଡା ପିନ୍ଧୁଥିଲେ । କେହି କେହି ଧନୀ ବ୍ୟବସାୟୀ, ସରକାରୀ କର୍ମଚ୍ଚାରୀମାନେ ବିଲାତି ବସ୍ତ୍ର ବ୍ୟବହାର କରୁଥିଲେ ତାଙ୍କୁ ନିମ୍ନଲିଖିତ କେତେଜଣ ସ୍ୱେଚ୍ଛା-ସେବୀ ବିଦେଶୀ ବସ୍ତ୍ର ବ୍ୟବହାର ନକରିବାକୁ ପ୍ରବର୍ତ୍ତାଉ ଥିଲେ ।

୧- ଧ୍ରୁବଚରଣ ମହାନ୍ତ କୁଚିଣ୍ଡା; ୨ୟ ଶିକ୍ଷକ ଉ.ପ୍ରା. ସ୍କୁଲ ଗଡପୋଷ
୨- ବାଳମକୁନ୍ଦ ନାୟକ ସଗର ୩ୟ ,, ,, ,, ,,
୩- ବୃନ୍ଦାବନ ପଟେଲ, ୪- ଗୁଣସାଗର ପଟେଲ, ୫- ଯୋଗୀନ୍ଦ୍ର ପଟେଲ, ପିଣ୍ଡାପଥର, ଏମାନେ ଗଡପୋଷରେ ଓ ନିକଟସ୍ଥ ଗ୍ରାମ-ମାନଙ୍କରେ ବିଲାତି ସଉକିନିଆ ଜିନିଷ ଓ ବସ୍ତ୍ର ବ୍ୟବହାର ନ କରିବାକୁ ଲୋକମାନଙ୍କୁ ବୁଝାଉଥିଲେ । ଦିନେ ସେମାନେ ପିଣ୍ଡାପଥର ମୌଜାକୁ ଆସି ବୁଝାଇବାରେ ଗ୍ରାମସ୍ଥ ଶ୍ରୀ ହୃଦାନନ୍ଦ ଶତପଥୀ ସ୍ୱତଃପ୍ରବୃତ ହୋଇ ତାଙ୍କ ପିନ୍ଧିଥିବା ବିଲାତି ଧୂତିକୁ ସମସ୍ତଙ୍କ ସାମନାରେ ଚିରାସିଲି ମାରି ଜଳାଇ ଦେଇଥିଲେ । ଏ ବିଷୟ ଗ୍ରାମ ଚୌକିଦାର ଗଡପୋଷ ଫାଣ୍ଡିରେ ରିପୋର୍ଟ କଲା ଓ ଗଡପୋଷ ଏ. ଏସ୍. ଆଇ. ବଳଦେବ ଶର୍ମା ଉକ୍ତ ବିଷୟ ତଦନ୍ତକରି ଶିକ୍ଷକ ଦୁଇଜଣଙ୍କ ନାମରେ କେଶ୍‌କରି ସ:ଡ:ମା: ରୁଚିଦପୁର କୋର୍ଟକୁ ଋଲାଣ କଲେ । ସେମାନଙ୍କୁ ଜାମିନ୍‌ରେ ଛଡାଗଲା ନାହିଁ । ମକଦ୍ଦମା ବିଋର ଶେଷ ପର୍ଯ୍ୟନ୍ତ ୨୧ ଦିନ ସେମାନେ ରୁଚିଦପୁର ପୁଲିସ ହାଜତରେ ଅଟକ ବନ୍ଦୀ ହୋଇ ରହିଲେ । ବିଋରରେ ସଦାଚରଣ ଜାମିନରେ ଖଲାସ ହେଲେ ଉଭୟଙ୍କ ଠାରୁ କପଡାର ମୂଲ୍ୟ ବାବଦକୁ ଟ. ୧-୨୫ ଲେଖାଏଁ ଟ. ୨-୫୦ ଅସୁଲ କରଯାଇ ହୃଦାନନ୍ଦଙ୍କୁ ଦିଆଗଲା କିନ୍ତୁ ସେ ତାହା ଗ୍ରହଣ କଲେନାହିଁ ।

ଦୟାନନ୍ଦ ଶତପଥୀ ସମ୍ବଲପୁରରେ କିଛିଦିନ ରହିବା ପରେ ବରଗଡ ଯାଇ ସେଠାରେ କଂଗ୍ରେସ କର୍ମୀମାନଙ୍କୁ ତାଲିମ ଦେବା ନିମନ୍ତେ ଗୋଟିଏ ଶିବିର ଖୋଲିଲେ । ଏହି ଶିବିରରେ ବାମଣ୍ଡାରୁ— ୧- ଗୋପାଳ ଚନ୍ଦ୍ର ପାଣିଗ୍ରାହୀ କୁଚୁଳପାଲି, ୨- ଚନ୍ଦ୍ରଶେଖର ପାଣିଗ୍ରାହୀ ମନାପାଲି, ୩- ରାଜିବଲୋଚନ ପଟେଲ ଉଲୁଣ୍ଡା, ୪- ଦଶରଥ ନାୟକ ଓ ୫- ଅରକ୍ଷିତ ପଟେଲ ସାହାଜବାହାଲ ଯାଇ ଯୋଗଦେଲେ । ଅନ୍ୟାନ୍ୟ ଅଞ୍ଚଳରୁ ସେହି ଶିବିରକୁ କର୍ମୀମାନେ ମଧ୍ୟ ଆସି ଯୋଗଦେଲେ ଓ ମୋଟ ୩୫ ଜଣ ତାଲିମ ନେଲେ । ସେମାନେ ସମସ୍ତେ ମାଗି ମାଗି ଶିବିର ପରିଚାଳନା କରୁଥିଲେ । କିନ୍ତୁ ଲବମ୍ବା ଗୌନ୍ତିଆ ଉଦାରମନା ଶ୍ରୀ ବ୍ରଜମୋହନ ପଣ୍ଡା ଏକଥା ଜାଣି-ପାରି ଦୟାନନ୍ଦ ବାବୁଙ୍କୁ ଭେଟି କହିଲେ, "ଆପଣ ସ୍ୱେଚ୍ଛାସେବୀମାନଙ୍କୁ ମାଗିବା ନିମନ୍ତେ ପଠାଇବେ ନାହିଁ । ଏମାନଙ୍କର ଖାଦ୍ୟ ସମସ୍ୟା ସମାଧାନ କରିବାର ଦାୟିତ୍ୱ ମୁଁ ନେଉଛି ।" ଏହା କହି ସେ ନିଜ ଗାଁକୁ ଯାଇ ସଙ୍ଗେ ସଙ୍ଗେ ଚାଉଳ ଚାରିବସ୍ତା, ମୁଗ ଏକବସ୍ତା ପଠାଇଦେଲେ ଓ ପ୍ରତ୍ୟେକ ସପ୍ତାହରେ ଏକ ବସ୍ତା ଲେଖାଏଁ ପନିପରିବା ପଠାଇ ଦେଉଥାନ୍ତି, ଏହିପରି ଶିବିର ଦୁଇମାସ ଚାଲିବା ପରେ ପୁରୀ କଂଗ୍ରେସ ଅଧିବେଶନକୁ ଯିବା ନିମନ୍ତେ ଏମାନଙ୍କ ପ୍ରସ୍ତାବ ହେଲା । ଏମାନେ ସମସ୍ତେ ସୋନପୁରରୁ ଡଙ୍ଗାରେ ମହାନଦୀ ଉପରେ ପୁରୀ ଯିବାକୁ ଠିକ୍ କଲେ । ଏମାନଙ୍କର ଜିନିଷପତ୍ର ଲବମ୍ବା ଗୌନ୍ତିଆ ପଠାଇ ଦେଇଥିବା ଗୋରୁ ଗାଡ଼ିରେ ବୋହେଇ ହୋଇ ସୋନପୁର ଡଙ୍ଗାଘାଟ ପର୍ଯ୍ୟନ୍ତ ଗଲା । ସମ୍ବଲପୁର ଅତି-କ୍ରମ କରି ସୋନପୁର ରାଜ୍ୟର ସୀମା ସ୍ପର୍ଶ କରିବା ମାତ୍ରକେ ସୋନପୁର ରାଜାଙ୍କ ଲୋକେ ଗାଡ଼ଟଣା ହୋଇଥିବା ବଳଦ ଦୁଇଟିର ଖଳଚରି (Grazing Tax) ମାଗିଲେ । ଏହା ନଦେବା ପର୍ଯ୍ୟନ୍ତ ଗାଡ଼ ଅଟକାଇ ରଖିଲେ । ଏମାନେ ବାଧ୍ୟ ହୋଇ ଟିକସ ଦେଲେ । ତା ପରେ ଏମାନେ ପୁରୀ କଂଗ୍ରେସ ଅଧିବେଶନକୁ ଯାଉଥିବା ଜାଣି ଗଡ଼ । ସବୁ ଡଙ୍ଗାବାଲାଙ୍କୁ ଡକାଇ ଏମାନଙ୍କୁ ଡଙ୍ଗାରେ ନ ନେବାକୁ ତାଗିଦ୍ କରିଦେଲେ । ସେଠାରେ ଏମାନେ ଦୁଇଦିନ ବସିରହିବା ପରେ ସହାସ ବୋଲି ଜଣେ ଡଙ୍ଗାବାଲା ଏମାନଙ୍କୁ କଟକ ପର୍ଯ୍ୟନ୍ତ ନେଇଯିବାର ସାହାସ ବାନ୍ଧିଲା । ତାହାର ଡଙ୍ଗାରେ ବସି ଏମାନେ ଦଶ ଦିନରେ କଟକ ପହଞ୍ଚିଲେ । କଟକକୁ ପହଞ୍ଚି ଜାଣି-ବାକୁ ପାଇଲେ ଯେ କଂଗ୍ରେସ ଅଧିବେଶନ ବେଆଇନ ହୋଇ ଯାଇଅଛି ।

ତେଣୁ ନେତାମାନଙ୍କ ଆଦେଶ କ୍ରମେ ଏମାନେ କଟକ ସହର ମଦ, ଅଫିମ ଓ ଗଞ୍ଜା ଦୋକାନ ମାନଙ୍କରେ ପିକେଟିଂ କଲେ । ଏହି ଅପରାଧରେ ଏମାନଙ୍କୁ ପାଞ୍ଚମାସ ଲେଖାଏଁ ଜେଲ ଦଣ୍ଡ ହେଲା । ତା ୧୬ । ୧ । ୧୯୩୨ ମ୍ଃ ଦିନ ବାମଣ୍ଡାର ଉପରୋକ୍ତ କର୍ମୀ ୪ ଜଣ କଟକ ଜେଲରେ ପ୍ରବେଶ କଲେ । ତା ୩୦ । ୧ । ୧୯୩୨ ମ୍ଃ ଦିନ ସେମାନଙ୍କୁ ପାଟନା (ବିହାର) କେମ୍ପ ଜେଲକୁ ପଠାଗଲା । ସେଠାରେ ପାଞ୍ଚମାସ ଜେଲ୍ ଭୋଗ ପୂର୍ଣ୍ଣ କରି ନିଜ ନିଜ ଘରକୁ ଫେରି ଆସିଲେ । ବାମଣ୍ଡା ସରକାର ତାଙ୍କ ଗ୍ରାମ ଛାଡ଼ ଅନ୍ୟତ୍ର ନ ଯିବାକୁ ତାଙ୍କ ଉପରେ ୧୪୪ ଧାରା ଜାରି କଲେ । ବିଶେଷ କାର୍ଯ୍ୟ ବଶତଃ ଅନ୍ୟ ଗ୍ରାମକୁ ଗଲେ ପୁଲିସକୁ ଜଣାଇ ଯାଇ ପାରୁଥିଲେ । ଅଧିକନ୍ତୁ ଏମାନଙ୍କ ପ୍ରତ୍ୟେକଙ୍କ ଘରେ ଗ୍ରାମର ଚୌକିଦାରମାନେ ଜଗି ରହୁଥାନ୍ତି ଓ ତାଙ୍କର ଗତିବିଧି ସବୁ ପୁଲିସକୁ ରିପୋର୍ଟ କରୁଥାନ୍ତି । ଚୌକିଦାରମାନେ ଠିକ୍ ଭାବରେ ଜଗୁଛନ୍ତି କି ନା ତାହା ପୁଲିସ କନ୍‌ଷ୍ଟେବଲ ଠାରୁ ସବ୍‌ଇନ୍‌ସପେକ୍ଟର ପର୍ଯ୍ୟନ୍ତ ସମସ୍ତ ପୁଲିସ କର୍ମଚାରୀମାନେ ସାମୟିକ ତଦାରଖ କରୁଥାନ୍ତି ।

କୁଚିଣ୍ଡା ଚମଡା ଠିକାଦାର ତାଙ୍କ ମୁନ୍‌ସି ଇଗଦତ୍ ହୁସେନ୍‌ଙ୍କୁ କାମ-କରଇଲେ । ତାଙ୍କର ଠିକା ବନ୍ଦ କରିଦେବାର ଧମକ ସରକାର ଦେବାରୁ ଶ୍ରୀ ହୁସେନ୍ ବାମଣ୍ଡା ରାଜ୍ୟରୁ ଚାଲିଗଲେ ।

ସରକାରଙ୍କ ସମସ୍ତ କଟକଣା ସତ୍ତ୍ୱେ ଏହି ଜେଲ ଫେରନ୍ତା ୪ ଜଣ, ଦାଶରଥି ମିଶ୍ର, କାଶୀନାଥ ପଟେଲ ରାମତିଲେଇମାଳ, ସାମ୍ବାଦିକ ଭଗୀରଥି ଗୌନ୍ତିଆ ଓ ଦୟାନିଧି ପାଣିଗ୍ରାହୀ ଓ ଗୁପ୍ତରେ ଆଉ କେତେଜଣ କଂଗ୍ରେସ ର ପ୍ରଚାର କାମ ଚଳାଇଥାନ୍ତି । ସରକାର; ସରକାରୀ କର୍ମଚାରୀ ଓ ପୁଲିସଙ୍କ ଅନ୍ୟାୟ କାର୍ଯ୍ୟ, ପ୍ରଜାଙ୍କ ପ୍ରତି ଅମାନୁଷିକ ଉତ୍ପୀଡନ ବିଷୟ ବରାବର 'ସମାଜ' ପତ୍ରିକାରେ ଭଗୀରଥି ଓ ଦୟାନିଧିଙ୍କ ଉଦ୍ୟମରେ ବାହାରୁଥାଏ । ଏଣୁ ବାମଣ୍ଡା ପୁଲିସ ବାମରା ପୋଷ୍ଟ ଅଫିସରୁ ସମସ୍ତ 'ସମାଜ' ପତ୍ରିକା ଜବ୍ତ କରି ନେଉଥିଲେ । ପ୍ରତ୍ୟେକ ପୋଷ୍ଟ ଅଫିସ ମଧ୍ୟ ପୁଲିସ ଯାଞ୍ଚ କରିବାକୁ ଲାଗିଲେ । ଶେଷରେ 'ସମାଜ' ପତ୍ରିକା ପଢିବା ମନା କରି-ଦେଲେ— ରାଜ୍ୟ ସରକାର ଗୋଟିଏ ଇସ୍ତାହାର ବାହାର କରି ।

ଯେଉଁମାନେ ପ୍ରଚାରକାର୍ଯ୍ୟ କରୁଥିବାର ସଂଦେହ କରୁଥିଲେ ସେମାନଙ୍କ ସାମାନ୍ୟ ତ୍ରୁଟିରେ ମଧ୍ୟ ସେମାନଙ୍କୁ ପୁଲିସ ଥାନାକୁ ଡକାଇ ଧମକ ଚମକ କରୁଥିଲେ, ମିଥ୍ୟା ମକଦ୍ଦମା ମଧ୍ୟ ତାଙ୍କ ନାମରେ କରି ଦେଉଥିଲେ । ଅନ୍ୟାନ୍ୟ ମାନଙ୍କ ମଧ୍ୟରେ ଲେଖକଙ୍କ ପିତା, ଜ୍ୟେଷ୍ଠ ଭ୍ରାତା ଦ୍ୱୟ, କାଶୀନାଥ ପଟ୍ଟନାୟକ ସରକାରଙ୍କ ଅଗ୍ରଗଣ୍ୟ ଚକ୍ଷୁଶୂଳ ଥିଲେ । ଅନେକ ଘଟଣା ମଧ୍ୟରେ ଏଠାରେ ଗୋଟିଏ ମାତ୍ର ମୋ କୁଟୁମ୍ବର ଉଲ୍ଲେଖ କଲି ।

ସନ୍ ୧୯୩୩ ମଃ (ଖରବେଳ) ମାର୍ଚ୍ଚ ମାସରେ କଟକ ତରଫରୁ ଗୋଟିଏ ନାଟୁଆ ଦଳ ଆସିଲେ । ସେମାନେ ବୈଷ୍ଣବ ପାଣିଙ୍କ ରଚିତ କେଦାରଗୌରୀ, ବସନ୍ତ ମାଳତୀ, ଅମର ବିଳାସ, ହରିଷ୍ଟନ୍ଦ୍ର, ପ୍ରଭୃତି ନାଟକ ଦେଖାଉଥିଲେ । ଉକ୍ତ ନାଟକ ଦେଖିବା ନିମନ୍ତେ ମୋ ଗ୍ରାମ ସାତକମାର ପ୍ରାୟ ୨୦ ଜଣ ଯୁବକ କୁଚିଣ୍ଡା ଗଲେ । ନାଟକ ପୁରୁଣା କଚେରୀ ଓ ଭଣ୍ଡାର ଘର (ବର୍ତ୍ତମାନ ଅରଣା ଛାତ୍ରନିବାସ) ମଝି ସ୍ଥାନରେ ହେଉଥାଏ । ସେତେବେଳେ ବାଞ୍ଛାନିଧି ପଟ୍ଟନାୟକ ପୁଲିସ କୋର୍ଟ ସବ୍-ଇନସପେକ୍ଟର ଥିଲେ । ସେ ସାତକମାର ଯୁବକଙ୍କୁ ଦେଖି "ଏହି କଂଗ୍ରେସୀଆଙ୍କୁ ଭିତରକୁ ନେବାନାହିଁ" କହି ସେମାନଙ୍କ ମଧ୍ୟରୁ ହଳଧର ଗୌନ୍ତିଆ ଜନୈକ ପ୍ରାଇମେରୀ ଶିକ୍ଷକଙ୍କୁ ସଙ୍ଗରେ ନେଇ ଦୁହେଁ ଗୋଟିଏ ଚୌକିରେ ବସିଲେ । ନାଟ ହେଉଥିବା ବେଳେ ଚୌକିଟି ଉଲ୍ଟିଗଲା । ବୁଦ୍ଧରାୟ ଅନ୍ୟମାନଙ୍କ ସହ ହସିଦେଲେ । କୁଚିଣ୍ଡା ସ.ଦ.ଅ.ଙ୍କ ଜନୈକ କିରାଣୀ, ବିଷ୍ଣୁଚରଣ ସାହୁ ତାଙ୍କୁ ଗାଳିଦେଲେ । ଉଭୟଙ୍କ ମଧ୍ୟରେ ଝଗଡା ହୋଇଗଲା । ପୁଲିସ ସବ୍‌ଇନ୍‌ସପେକ୍ଟର ନିତ୍ୟାନନ୍ଦ ସାହୁ ସେମାନଙ୍କୁ ଶାନ୍ତ କଲେ । ଅଫିସର ମହଲଙ୍କ ପ୍ରେରଣାରେ ବିଷ୍ଣୁଚରଣ ପୁଲିସରେ ରିପୋର୍ଟ ଦେଇ ବୁଦ୍ଧରାୟଙ୍କ ନାମରେ ସ:ଡ:ମା: କୋର୍ଟରେ ନାଲିସ କଲେ । ସ.ଡ.ମା ବସନ୍ତ କୁମାର ବହିଦାର ମକଦ୍ଦମା ବିଚାର କରି ତିନି ଟଙ୍କା ମାତ୍ର ଜରିମାନା କଲେ । ସେ ସ.ଡ ମା. ଙ୍କ ରାୟ ବିରୁଦ୍ଧରେ ଷ୍ଟେଟ ସୁପରିନ୍-ଟେନ୍‌ଡେଣ୍ଟ ଦେବଗଡଙ୍କ ନିକଟରେ ଅପିଲ କଲେ । ଅପିଲ ନାମଞ୍ଜୁର ହେଲା । ପୁନଶ୍ଚ ଉକ୍ତ ରାୟ ବିରୁଦ୍ଧରେ ସେ Secretary to the Agent of the Government General Estern State Ranchi ଙ୍କ ନିକଟରେ ଅପିଲ କଲେ । ଅପିଲ ମଞ୍ଜୁର ହେଲା । ବୁଦ୍ଧରାୟ ୩ ଟଂକା

ଫେରସ୍ତ ପାଇଲେ । ବିଷ୍ଣୁଚରଣ ଧାଦା କାଗଜରେ ନାଲିସ କରିଥିବାରୁ କୋର୍ଟ ଫି ବାବଦକୁ ଛଅ ଅଣା ପଇସା କୋର୍ଟକୁ ଦେଲେ । ବୃଦ୍ଧରାଜଙ୍କ ବିରୁଦ୍ଧରେ ବାମଣ୍ଡା ରାଜ ସାହିର ଏପରି ଅତ୍ୟାଚାର ସ୍ନ ୧୯୩୧ ମଃ ଖଜଣା ବନ୍ଦ ଆନ୍ଦୋଳନରୁ ସ୍ନ ୧୯୪୭ ମଃ ପର୍ଯ୍ୟନ୍ତ ଚାଲି ଆସିଅଛି ।

ଭବାନୀ ଚରଣ ପାଲ ନି: ରୁଚିଦପୁରଙ୍କ ଗଡପୋଷ ଅଞ୍ଚଳରେ ଖଣ୍ଡେ ଗ୍ରାମ ଅଛି । ସେଠାରେ ସେ ଚାଷ କରନ୍ତି । ସ୍ନ ୧୯୩୫ ମଃ ଖରବେଳ ସେ ବାମରା ଷ୍ଟେସନରୁ ଗଡପୋଷ ଷ୍ଟେସନ ପର୍ଯ୍ୟନ୍ତ ଯାଉଥିବା ଟ୍ରେନ୍‌ର କୌଣସି ଯାତ୍ରୀ ଠାରୁ ଖଣ୍ଡେ ସମାଜ ପତ୍ରିକା ଆଣି ସେଦିନ ଗଡପୋଷ ସାପ୍ତାହିକ ବଜାର ହୋଇଥିବାରୁ ବଜାର ସୀମା ବାହାରେ ଗୋଟିଏ କୋଳାହଳ ଶୂନ୍ୟ ସ୍ଥାନରେ ଏକାକୀ ବସି ପଢୁଥାନ୍ତି । ଜଣେ ପୁଲିସ କନ୍‌ଷ୍ଟେବଲ ଏହା ଦେଖି ଗଡପୋଷ ଫାଣ୍ଡିରେ ରିପୋର୍ଟ କଲେ । ସେତେବେଳେ ବଳଦେବ ଶର୍ମା ଏ. ଏସ୍. ଆଇ. ସେଠାରେ ଥିଲେ । ସେ ଭବାନୀ ଚରଣ ପାଲଙ୍କ ନାମରେ ରୁଚିଦପୁର ସ. ଡ. ମା.ଙ୍କ କୋର୍ଟରେ ମକଦ୍ଦମା ଦାଏର କଲେ । ଗଡପୋଷର ଜଙ୍ଗଲ ଦାରୋଗା (Forester) ଲାଲ ମୋହନ ଦାସ ସାକ୍ଷୀ ହେଲେ । ସେତେବେଳେ ରୁଚିଦପୁର କୋର୍ଟର ସ. ଡ. ଅ. ଓ ସ.ଡ.ମା. ଶ୍ରୀ ଗୋବିନ୍ଦ ରାଘବା ରାଓ ଥିଲେ । ସେ ବାମଣ୍ଡାକୁ ଆସି ପ୍ରଥମେ ଦେବଗଡ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ଶିକ୍ଷକତା କରୁଥିବା ବେଳେ ଭବାନୀଚରଣ ତାଙ୍କ ଶିଷ୍ୟଥିବା ହେତୁ ସେ ଉକ୍ତ ମକଦ୍ଦମା ବିଚାର ନକରିବାକୁ ଷ୍ଟେଟ ସୁପରିନ୍‌ଟେନ୍‌ଡେଣ୍ଟଙ୍କୁ ଜଣାଇ ଦେଲେ । ସେ କୁଚିଣ୍ଡା ୨ୟ ମାଜିଷ୍ଟ୍ରେଟ ଅଦ୍ୱୈତ ଚରଣ ମହାନ୍ତିଙ୍କୁ ଉକ୍ତ ମକଦ୍ଦମା ବିଚାର କରିବାକୁ ରୁଚିଦପୁର ପଠାଇଲେ । ସେଠାରେ ସେ ମକଦ୍ଦମା ବିଚାର କରି ଶ୍ରୀ ପାଲଙ୍କୁ ଷାଠିଏ ଟଙ୍କା ଜରିବାନା ଓ କଚେରୀ ଶେଷ ପର୍ଯ୍ୟନ୍ତ ଜେଲ ଦଣ୍ଡ ଦେଲେ । ଭବାନୀ ବାବୁ ଅପିଲ କରି ଜରିବାନାରୁ ଅବ୍ୟାହତି ପାଇଲେ କିନ୍ତୁ ରାଜ୍ୟରେ କେହି 'ସମାଜ' ପତ୍ରିକା ପଢିବାକୁ ସାହସ କଲେ ନାହିଁ । ବ୍ରହ୍ମପୁରରୁ ବାହାରୁଥିବା "ଆଶା" ପତ୍ରିକା ବାମଣ୍ଡା ବାସୀ କେହି କେହି ମଗାଇ ପଢିବାକୁ ଆରମ୍ଭ କଲେ ।

କାଶୀରାମ ପଟେଲ ନି. ରମତିଲେଇମାଳ ବାମଣ୍ଡାର ଜଣେ ପୋଖତ କଂଗ୍ରେସ କର୍ମୀ । ଦୟାନନ୍ଦ ଶତପଥୀ ସ୍ନ ୧୯୨୬-୨୭ ମଃରେ ପ୍ରଥମେ

ପାରୁଆଗଡ଼ ଉ: ପ୍ରା: ସ୍କୁଲର ହେଡ ପଣ୍ଡିତ ନିଯୁକ୍ତ ହେଲେ ଓ ନିକଟସ୍ଥ ଗ୍ରାମ ରମତିଲେଇ ମାଳରେ ରହିଲେ ଓ ସେଠାରୁ ପାରୁଗଡ଼କୁ ଯିବା ଆସିବା କରି ଶିକ୍ଷକତା କରୁଥିଲେ । ଏହି ସମୟରୁ ଦୟାନନ୍ଦ ଓ କାଶୀରାମଙ୍କ ମଧ୍ୟରେ କଂଗ୍ରେସ ତଥା ମହାତ୍ମାଙ୍କ ଅହିଂସା ନୀତି ବିଷୟରେ ଆଲୋଚନା ହେଉଥାଏ । ଏହି ଘଟଣା କୁଚିଣ୍ଡା ପୁଲିସକୁ ଅଜଣା ରହିଲା ନାହିଁ, କାଶୀରାମଙ୍କର ଗତିବିଧିକୁ ପୁଲିସ ସତର୍କତାର ସହ ଜଗିରହିଲେ । ଏହି ଘଟଣା ଏତେ ତୀବ୍ରତର ହେଲା ଯେ ସେ ତାଙ୍କ ଘରଦ୍ୱାର ସମ୍ବଲପୁର ଜିଲ୍ଲା ଲଇକେର ଥାନାସ୍ଥ ଝୀର୍ଲାପାଲି ମୌଜାରେ ବସବାସ କଲେ ଓ କଂଗ୍ରେସର କାମ କଲେ । ଉଜ୍ଜ୍ୱଳ ଲୋଚନ ପଟେଲ କଟକ କଂଗ୍ରେସ ଅଫିସରେ ଯାଇ ରହିଲେ ଓ କଂଗ୍ରେସର କାମ କଲେ । ଅରକ୍ଷିତ ପଟେଲ ରେଢ଼ାଖୋଲ ରାଜ୍ୟକୁ ଯାଇ କିସିଣ୍ଡା ଗ୍ରାମରେ ରହି କଂଗ୍ରେସର ବାର୍ତ୍ତା ପ୍ରଚାର କଲେ ଚନ୍ଦ୍ରଶେଖର ପାଣିଗ୍ରାହୀ ସମ୍ବଲପୁର ଜିଲ୍ଲା, ବର୍ତ୍ତମାନ ହୀରାକୁଦ ଜଳଭଣ୍ଡାରରେ ବିଲୀନ ହୋଇଥିବା ରଙ୍ଗେଲା ମୌଜାରେ ରହି କଂଗ୍ରେସର କାର୍ଯ୍ୟ କଲେ । ଦାଶରଥି ମିଶ୍ର ତାଙ୍କ ଗ୍ରାମ ରାମଝାଲି ମୌଜାରେ "ବାସୁଦେବ ସେବା ସଂଘ" ଗଠନ କରି ଗ୍ରାମ ୨ ବୁଲି ମହାତ୍ମାଗାନ୍ଧୀଙ୍କ ରଚନାତ୍ମକ କାର୍ଯ୍ୟ ବିଷୟରେ ବୁଝାଇଲେ । ତାଙ୍କର ଏହି କାର୍ଯ୍ୟରେ ଅନ୍ୟାନ୍ୟଙ୍କ ମଧ୍ୟରେ ବିଶେଷ ସାହାଯ୍ୟ କରିଥିଲେ (୧) ବାଳମକୁନ୍ଦ ରାୟ, କୁଚିଣ୍ଡା (୨) ଦଶରଥ ନାୟକ (ଜେଲ୍ ଫେରନ୍ତା କଂ କର୍ମୀ) (୩) ଧ୍ରୁବ ଚରଣ ମହାନ୍ତ, କୁଚିଣ୍ଡା (୪) ଅନନ୍ତଚରଣ ମହାନ୍ତ, କୁଚିଣ୍ଡା (୫) ଲକ୍ଷ୍ମଣ ପୂଜାରୀ କୁଲୁଣ୍ଡି, ଶେଷୋକ୍ତ ୩ ଜଣ ବାମଣ୍ଡାରାଜ୍ୟର ପ୍ରାଇମେରୀ ସ୍କୁଲ ଶିକ୍ଷକତା କରୁଥିଲେ । ଦାଶରଥି ମିଶ୍ରଙ୍କ ସହିତ ସମ୍ବନ୍ଧ ରଖିଥିବାରୁ ପୁଲିସର ବିଷ ଦୃଷ୍ଟିରେ ପଡ଼ିଲେ ଓ ଜଣ ୨ ହୋଇ ଶିକ୍ଷକତା ଚାକିରୀରୁ ବିତାଡ଼ିତ ହୋଇ ବାମଣ୍ଡା ରାଜ୍ୟ ମଧ୍ୟ ତ୍ୟାଗ କରିଥିଲେ ।

ସନ ୧୯୩୬ ମ:ରେ ତତ୍କାଳିନ ବାମଣ୍ଡା ଯୁବରାଜ ଶ୍ରୀ ଭାନୁଗଙ୍ଗ ତ୍ରିଭୁବନ ଦେବଙ୍କ ଗଦିନସୀନ ହେଲା । ସେ ସିଂହାସନ ଆରୁଢ଼ ହେଲେ । ମେକଫରସନ ସାହେବ ବସ୍ତର ରାଜ୍ୟକୁ ସୁପରିନ୍‌ଟେନ୍‌ଡେଣ୍ଟ ହୋଇ ଚାଲିଗଲେ ।

ପୁରୀ ରଜା ରମଚନ୍ଦ୍ର ଦେବ, ବାମଣ୍ଡା ରଜା ସଚ୍ଚିଦାନନ୍ଦଙ୍କ ତୃତୀୟ ପୁତ୍ର ଅଟନ୍ତି । ସେ ବାମଣ୍ଡାରେ ଢେଙ୍କାମଣି ନାମରେ ଅପକ୍ଷାତି ଅର୍ଜନ କରିଥିଲେ । ପୁରୀର କଲେକ୍ଟର ଅରୁଣ କୁମାର ଦୋଷ ନାମକ ଜଣେ I A. S. ଅଫିସର ଥିଲେ । ପୁରୀ ରଜା ଶ୍ରୀ ରମ ଚନ୍ଦ୍ର ଦେବଙ୍କ ଉକ୍ତ ଦୋଷଙ୍କ ସହିତ ପୁରୀ B. N. R. ହୋଟେଲରେ ପ୍ରତ୍ୟେହ ଭେଟ ହୁଏ ଓ ଖାନା ପିନା ଚଳେ । ଉଭୟଙ୍କ ମଧିରେ ବେଶ ବନ୍ଧୁତା ଥିଲା । ଏହି ସମୟରେ ଦୋଷ ମହାଶୟ ଅବସର ନେଇ କଲିକତାରେ ରହୁଥିଲେ । ପୁରୀ ରଜା ଉକ୍ତ ଅରୁଣ କୁମାରଙ୍କୁ ବାମଣ୍ଡାର ଦେଓ୍ୱାନ କରିବାକୁ ପ୍ରବର୍ତ୍ତାଇଲେ ଓ ସେ ବାମଣ୍ଡାର ଦେଓ୍ୱାନ ହେଲେ ।

ରଜା ଭାନୁଗଙ୍ଗ ରାୟପୁର ରାଜକୁମାର କଲେଜରେ ପଢୁଥିଲେ । ଏହି ଶିକ୍ଷାୟତନରେ ଉଚ୍ଚ ମାନର ଇଂରଜ ଶିକ୍ଷା ଦିଆଯାଉଥିଲା ଓ ଘୋଡ଼ାଚଢ଼ା, ପଲୋଖେଳ ପ୍ରଭୃତି କେତେକ ବିଲାତି ଆଦବ କାଇଦା ପ୍ରଚଳିତ ଥିଲା ଉକ୍ତ ମହାବିଦ୍ୟାଳୟରେ ବସନ୍ତ କୁମାର କର ନାମକ ଜଣେ ଶିକ୍ଷକ ଥିଲେ ଓ ଏହି ସମୟରେ ସେ ମଧି ଅବସର ଗ୍ରହଣ କଲେ ଓ ରଜା ଭାନୁଗଙ୍ଗ'ତାଙ୍କୁ ଆଣି ବାମଣ୍ଡାର ସହକାରୀ ଦେଓ୍ୱାନ ପଦବୀରେ ନିଯୁକ୍ତ କଲେ ।

ଉପରୋକ୍ତ ବାମଣ୍ଡାର ଶାସନ କର୍ତ୍ତାମାନେ ବାମଣ୍ଡାର ରାଜକୋଷ ପରିବର୍ଦ୍ଧନ ନିମନ୍ତେ ଜଙ୍ଗଲ ଠିକା, ମଦଭାଟୀ ଠିକା, ହାଣ୍ଡିଆ ଓ ଖଜୁରି ତାଡ଼ି ଠିକା, କେନ୍ଦୁପତ୍ର ଠିକା, ଲୁଣ ଠିକା, ଦିଆସିଲଇ ଠିକା, ବିଡ଼ି ଠିକା ଇତ୍ୟାଦି ପ୍ରଚଳନ କରି ପରୋକ୍ଷରେ ପ୍ରଜାଙ୍କୁ ଶୋଷଣ କରିବାରେ ଲାଗିଲେ ।

ବାମଣ୍ଡାର ପୂର୍ବତନ ରଜାମାନେ ଦେବଗଡ ସହରରୁ ୧୦ ମାଇଲ ପରିଧିରେ କୌଣସି ମଦଭାଟି ନଖୋଲିବାକୁ ଏପରିକି ଏପରିକି ଖଜୁରି ତାଡ ଓ ହାଣ୍ଡିଆ ନରନ୍ଧିବାକୁ ନିୟମ କରିଥିଲେ । ଏହାଙ୍କ ସମୟରେ ରାଜପରିବାର(ରାଜମାତା, ପଟାୟତ ହୃଦୟନାଥ ଦେବ, ଲାଲ ଜୟନାରାୟଣ ଦେବ ଇତ୍ୟାଦି) ଙ୍କ ବାରଣ ସତ୍ତ୍ୱେ ଦେବଗଡରେ ମଦଭାଟି ଠିକା ଦିଆଗଲା ।

ହାତୀ ଧର ଓ ଶିକାରୀ ମେକଫରସନ ସମୟରେ ଯାହା ଥିଲ ଏହାଙ୍କ ସମୟରେ ବଢିଲା - ଆୟ ଓ ଆମୋଦ ନିମନ୍ତେ ।

ରଜା ହେଲେ ପ୍ରଜାଙ୍କ ଦୁଃଖ ଲାଘବ ହେବ ବୋଲି ଯାହା ପ୍ରଜା-ମାନେ ଭାବିଥିଲେ ତାହା ହେଲା ନାହିଁ । ଏହି ସ୍ନ ୧୯୩୬ ମଃରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲା । ଶ୍ରୀ ବିଶ୍ୱନାଥ ଦାଶଙ୍କ ପ୍ରଧାନ ମନ୍ତ୍ରୀତ୍ୱରେ ଓଡ଼ିଶାରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ହେଲା । ଲୋକ ପ୍ରତିନିଧି ନିର୍ବାଚିତ ହେଲେ କିନ୍ତୁ ତାର ପ୍ରଭାବ ବାମଣ୍ଡା କାହିଁକି ଓଡ଼ିଶାର କୌଣସି ଗଡ଼-ଜାତରେ ପଡ଼ିଲା ନାହିଁ । ଏମାନେ ଯାବତ ଚନ୍ଦ୍ରାର୍କ ଚଳନ୍ତ ବିଷ୍ଣୁ ହୋଇ ରହିବାର ସ୍ୱପ୍ନରେ ମସଗୁଲ ହୋଇ ରହିଲେ ।

( ହେଷା ନରରୂପେଣ ତିଷ୍ଠନ୍ତ )

ବାମଣ୍ଡା ପ୍ରଜାମାନଙ୍କ ପ୍ରତି ବାମଣ୍ଡା ରାଜଦରବାରରେ ଅନ୍ୟାୟ ଅତ୍ୟାଚାର ବିଷୟ ଦୈନିକ 'ଆଶା' ପତ୍ରିକାରେ ଖୁବ୍ ଜୋରରେ ଉପ-ଯେଷ୍ଟ ଭଗୀରଥି ଓ ଦୟାନିଧିଙ୍କ ଉଦ୍ୟମରେ ପ୍ରକାଶ ପାଇଲା ଓ ଏହି ପତ୍ରିକା ବାମଣ୍ଡାରେ ପଢିବା ବେଆଇନ ଘୋଷିତ ହେଲା । କିନ୍ତୁ 'ସମାଜ' ପଢିବାରେ ଆଉ କଟକଣା ରହିଲା ନାହିଁ । ସ୍ନ ୧୯୩୭ ମଃ ରେ ଭଗୀରଥିଙ୍କ ମୃତ୍ୟୁ ହେଲା ଓ ଏକାକୀ ଦୟାନିଧି ବାମଣ୍ଡାର ସମ୍ବାଦ ପତ୍ରପତ୍ରିକାକୁ ପଠାଇଲେ ।

ସ୍ନ ୧୯୩୭ ମଃରେ ଶ୍ରୀ ହରେକୃଷ୍ଣ ମହତାବଙ୍କ ନେତୃତ୍ୱରେ ଗଡଜାତ ଇନ୍‌କ୍ୱାରୀ କମିଟୀ ସମ୍ବଲପୁରକୁ ଆସିଲେ । ଏହି କମିଟୀର ସଦସ୍ୟ ଥିଲେ ଡକ୍ଟର ହରେକୃଷ୍ଣ ମହତାବଙ୍କ ବ୍ୟତୀତ (୨) ଲୋକସେବକ ମଣ୍ଡଳର ପ୍ରଖ୍ୟାତ ନେତା ଶ୍ରୀ ବଲବନ୍ତ ରାୟ ମେହେଟା (୩) ତତ୍‌କାଳୀନ ଓଡ଼ିଶା ବିଧାନ ସଭର ବାଚସ୍ପତି ଥିବା ଶ୍ରୀ ଲାଲମୋହନ ପଟ୍ଟନାୟକ (୪) ଗଡଜାତ ଗାନ୍ଧୀ ସମାଜବାଦୀ ନେତା ଶ୍ରୀ ସାରଙ୍ଗଧର ଦାସ ।

ଏହି କମିଟୀ ସମ୍ମୁଖରେ ଦୟାନନ୍ଦ ଶତପଥୀ ଓ ଶ୍ରୀ ଦାଶରଥି ମିଶ୍ର ବାମଣ୍ଡା ସରକାରଙ୍କ ଅନ୍ୟାୟ ଅତ୍ୟାଚାର ବିଷୟ ବର୍ଣ୍ଣନା କରିଥିଲେ । ଦୟାନିଧି ପାଣିଗ୍ରାହୀ ସାକ୍ଷ୍ୟ ଦେବାକୁ ସମ୍ବଲପୁର ଯାଇଥିଲେ ହେଁ ସାକ୍ଷ ଦେଇ ପାରିନଥିଲେ ।

ଏହି ସମୟରେ ଦେବଗଡ ସବ୍‌ଡିଭିଜନରେ ପ୍ରଜା ଆନ୍ଦୋଳନ ହେଲା । ଅନଗୁଳରୁ ଦୁଇଜଣ କଂଗ୍ରେସ କର୍ମୀ ଶ୍ରୀ ଡମ୍ବରୁଧର ଗଡନାୟକ ଓ ଶ୍ରୀ ଭଟିଆ ସାହୁ ବାମଣ୍ଡାକୁ ଆସି ନିମ୍ନଲିଖିତ ବ୍ୟକ୍ତିମାନଙ୍କୁ କଂଗ୍ରେସ ସଭ୍ୟ ଭୁକ୍ତ କଲେ ।

୧- ମାନଗୋବିନ୍ଦ ଦାସ, ମେଦିନିପୁର, ୨- ସହଦେବ ସାହୁ, ତାଲଚାହାଲି
୩- ବିଲ ନାୟକ, ଟିଙ୍କବୀର, ୪- କାର୍ତ୍ତିକିଆ ବେହେରା, କରଲଗା
୫- କନ୍ଦର୍ପ ପ୍ରଧାନ, ବୁଢାପାଲ ୬- ନେତ୍ରାନନ୍ଦ ବେହେରା ”
୭- ମହାଦେବ ପ୍ରଧାନ, କାଦୋପଡା ୮- ଗୋପାଳ ପ୍ରଧାନ ”
୯- ସୁଦର୍ଶନ ” ” ୧୦- ଡମ୍ବରୁଧର ଗଡନାୟକ ”
୧୧- ଭଗବାନ ” ” ୧୨- ବୈଷ୍ଣବ ପ୍ରଧାନ ”
୧୩- ବିଦ୍ୟାଧର ସାହୁ, ପୋଢାପଡା ୧୪- କୃଷ୍ଣଚନ୍ଦ୍ର ” ଟିଙ୍କବୀର
୧୫- ବଳଭଦ୍ର ସାହୁ ” ୧୬- ବୈଷ୍ଣବ ନାୟକ ”
୧୭- ଭଗବାନ ପ୍ରଧାନ ” ୧୮- ଦାଶରଥି ମହାପାତ୍ର ”
୧୯- ବୃନ୍ଦାବନ ” ଆନ୍ଦସ ୨୦- ଦିବାକର ମିଶ୍ର, ଗମ୍ଭାରିପାଲି
୨୧- ଦିବାକର ବେହେରା; ସଂଘାପସି ୨୨- ଧର୍ମୁ ଭୁକ୍ତା, ଦେବଗଡ
୨୩- ଶ୍ରୀଧର ସାହୁ ” । ଏମାନେ ଛୋଟ ଛୋଟ ସଭାରେ ବୈଠକ କରି ବାମଣ୍ଡା ସରକାରଙ୍କର ଅନ୍ୟାୟ ଅତ୍ୟାଚାର ବିଷୟ ଲୋକ-ମାନଙ୍କୁ ବୁଝାଇଲେ ଓ କଂଗ୍ରେସ ସଭ୍ୟଭୁକ୍ତ ହୋଇ ମହାତ୍ମାଗାନ୍ଧୀଙ୍କର ଅହିଂସା ନୀତିରେ ଉକ୍ତ ଅନ୍ୟାୟର ପ୍ରତିରୋଧ କରିବାକୁ ପ୍ରବର୍ତ୍ତାଇଲେ ।

ଏହି ସମୟରେ ରିଆମାଳ ଥାନାରେ ସବ୍‌ଇନ୍‌ସପେକ୍ଟର ଥିଲେ ନେତ୍ରାନନ୍ଦ ପାଢୀ । ସେ ପ୍ରଥମ ୬ ଜଣଙ୍କୁ ଥାନାକୁ ଡାକି ଆଣି ନିଜେ କନଷ୍ଟେବଳଙ୍କ ଦ୍ୱାରା ନିୟୁକ୍ତ ମାଡ ମରାଇଲେ ଓ ବାମଣ୍ଡା ରାଜ୍ୟ ଭିତରେ ରହି କଂଗ୍ରେସ କାମ କଲେ ଜୀବନରେ ମରାଇ ଦେବାର ଧମକ ଦେଲେ । ଏମାନେ କେତେକାଂଶରେ ଭୟରେ ଓ କେତେକାଂଶରେ ମହାତ୍ମାଙ୍କ ଅହିଂସା ନୀତିରେ ଆଉଟିକିଏ ପୋଖତ ହୋଇ କଂଗ୍ରେସ ପ୍ରଚାର କାର୍ଯ୍ୟ ଜୋରରେ ଚଳାଇବାକୁ ଅନଗୁଳକୁ ଚାଲିଗଲେ ଓ ମୁଖ୍ୟତଃ ପାଟକୁମୁଡା

ଗ୍ରାମରେ ରହିଲେ ଓ ସେ ସ୍ଥାନର କର୍ମୀମାନଙ୍କ ସହ ବିଭିନ୍ନ ସ୍ଥାନର ସଭସମିତି କରି ଦୁଇମାସ ପର୍ଯ୍ୟନ୍ତ ତାଲିମ ନେବାପରେ ନୂତନ ସାହସ ଓ ଉତ୍ସାହର ସହିତ ନିଜ ନିଜ ଗ୍ରାମକୁ ଫେରି ଆସିଲେ ଓ ପୁନଶ୍ଚ କଂଗ୍ରେସର ପ୍ରଚାର କାର୍ଯ୍ୟରେ ଲାଗିଗଲେ । କେତେକ ମୁଖ୍ୟ ବ୍ୟକ୍ତିଙ୍କର ପ୍ରେରଣା ଓ ସାହାଯ୍ୟରେ ବାମଣ୍ଡାର ସର୍ବବୃହତ୍ ଗ୍ରାମ ଟିଙ୍କବୀରରେ ଗୋଟିଏ ସଭ କଲେ ଓ ଉପସ୍ଥିତ ଜନତାଙ୍କୁ ରାଜ୍ୟରେ ଚାଲିଥିବା ଧମକ ଚମକକୁ ନଡରି ବେଠି, ବେଗାର, ହାତୀଧରା, ଶିକାରୀ, ହାକାକାର୍ଯ୍ୟ ନକରିବାକୁ ଓ ରସଦ, ମାଗଣ, ଅନ୍ୟାୟ ଟିକସ, ବୃଦ୍ଧି ରାଜସ୍ୱ ପ୍ରଭୃତି ନଦେବାକୁ ଓ ସମସ୍ତେ ଏକଜୁଟ ହେବାକୁ ବୁଝାଇଲେ । ଏହି ବିଷୟ ଉକ୍ତ ଗ୍ରାମ ଗୌନ୍ତିଆ, ମହାଦେବ ପ୍ରଧାନ ଏମାନଙ୍କ ନାମରେ ରିପୋର୍ଟ କଲେ । ରିଆମାଲ ଥାନା ଇନ୍‌ସପେକ୍ଟର ଉପରୋକ୍ତ ପାର୍ଟୀ— ରାଜା ଓ ରାଜ୍ୟ ବିରୁଦ୍ଧରେ ଏହା ଗୋଟିଏ ଷଡଯନ୍ତ୍ର ବୋଲି କେଶ ଡାଏରୀ କରି ଏମାନଙ୍କ ମଧ୍ୟରୁ ୨୧ ଜଣଙ୍କୁ ଏରେଷ୍ଟ କରି ହାତରେ ହାତକଡ଼ି ଓ ଅଣ୍ଟାରେ ରସି ଭିଡ଼, ଗ୍ରାମକୁ ଗ୍ରାମ ଚଲାଇ ନେଇ ଦେବଗଡ଼ ଜେଲ ହାଜିତରେ ରଖିଲେ । ତାଙ୍କର ମକଦ୍ଦମା ବିଗ୍ଭର କଲେ ତତ୍‌କାଳିନ ବାମଣ୍ଡା ଦେଓ୍ୱାନ ଅରୁଣ କୁମାର ଘୋଷ । ଏହି ମକଦ୍ଦମାରେ ରାଜ ସାକ୍ଷୀ ହୋଇ ପୁଲିସ ତରଫରୁ ମୁଦାଲ-ମାନଙ୍କ ବିରୁଦ୍ଧରେ ସାକ୍ଷ ଦେଇଥିଲେ କୁଣ୍ଢାଇ ଗୋଳାର ଗୋପାଳ ପ୍ରଧାନ ଓ ଡୁଙ୍ଗାମାଳର ଘନଶ୍ୟାମ ଗଡନାୟକ । ବାହାରକୁ ଦେଖାଇବା ନିମନ୍ତେ ଗୋଟିଏ ବିଗ୍ଭର ପଦ୍ଧତି ମାତ୍ର ହେଲା, କିନ୍ତୁ ମନମୁଖୀ ରାୟରେ ଏମାନେ ପ୍ରତ୍ୟେକେ ତିନିବର୍ଷ ଲେଖାଏଁ ସଶ୍ରମ କାରାଦଣ୍ଡ ଭୋଗକଲେ । ଏମାନଙ୍କ ମଧ୍ୟରୁ ବାକି ଦୁଇଜଣ ଦିବାକର ମିଶ୍ର ଓ ଶ୍ରୀ ଦାଶରଥି ମହାପାତ୍ର ଅନୁଗୁଳ ଗ୍ଭଲିଯାଇ ସେଠାରେ ସନ୍ ୧୯୪୬ ମଃ ପର୍ଯ୍ୟନ୍ତ କୋଶଳା କେମ୍ପରେ ବସବାସ କଲେ । ଏହି ବିଶିଷ୍ଟ କର୍ମୀ ଦ୍ୱୟ ଆଇନ ଅମାନ୍ୟ ଅପରାଧରେ ବ୍ରିଟିଶ ସରକାର ଓଡ଼ଶାଙ୍କ ଦ୍ୱାରା ବହୁବାର କାରାଦଣ୍ଡ ଭୋଗ କରିଅଛନ୍ତି ଓ ସନ୍ ୧୯୪୨ ମଃ ଭାରତ ଛାଡ଼ ଆନ୍ଦୋଳନରେ ସ୍ୱେଚ୍ଛାସେବୀ ହିସାବରେ ଯୋଗ ଦେଇ କାରାବରଣ କରିଛନ୍ତି ।

ସ୍ନ ୧୯୩୯ ମ: ରେ ୨ୟ ବିଶ୍ୱଯୁଦ୍ଧ ଆରମ୍ଭ ହେଲା । ଏହି ଯୁଦ୍ଧରେ ଜର୍ମାନୀ ପୋଲାଣ୍ଡ ଉପରେ ଆକ୍ରମଣ କରି ଋଷିଆ ଅଭିମୁଖେ ମାଡ଼ ଚାଲିଲା । ଋଷିଆ, ଇଂଲଣ୍ଡ ୨ ଫ୍ରାନ୍ସ ଓ ଯୁକ୍ତରାଷ୍ଟ୍ର ଆମେରିକା ଏକତ୍ରିତ ହୋଇ ମିତ୍ରପକ୍ଷ କୁହାଇଲେ । ଜର୍ମାନୀ, ଇଟାଲୀ ଓ ଜାପାନ ଏକତ୍ରରେ ଶତ୍ରୁପକ୍ଷ ହେଲେ । ବ୍ରିଟିଶ ସରକାର ଉକ୍ତ ଯୁଦ୍ଧରେ ଯୋଗ ଦେଇଥିବା ହେତୁ (ଭାରତ ଜାତୀୟ କଂଗ୍ରେସର ଅନିଚ୍ଛା ସତ୍ତ୍ୱେ ଉକ୍ତ ଯୁଦ୍ଧକୁ ସାହାଯ୍ୟ କଲା) ବ୍ରିଟିଶ ସରକାରଙ୍କ ଅଧୀନରେ ଥିବା ଭାରତର ଦେଶୀୟ କରଦ ରାଜ୍ୟ ( ଗଡଜାତ ) ସବୁ ଉକ୍ତ ଯୁଦ୍ଧ ନିମନ୍ତେ ଜନବଳ ଓ ଧନବଳ ଯୋଗାଇଲେ । ଭାରତ ଜାତୀୟ କଂଗ୍ରେସ ଏହାର ତୀବ୍ର ବିରୋଧ କରୁଥିଲେ । ଯେଉଁ ୨ ପ୍ରଦେଶରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଥିଲା ସେମାନେ ଇସ୍ତଫାଦେଲେ । ଓଡ଼ିଶାର କଂଗ୍ରେସ ମନ୍ତ୍ରୀମଣ୍ଡଳ ମଧ୍ୟ ଇସ୍ତଫାଦେଲେ । ବାମଣ୍ଡାର ରାଜସରକାର ଯୁଦ୍ଧ ନିମନ୍ତେ ଲୋକ ପଠାଇବାକୁ ପ୍ରତ୍ୟେକ ଗ୍ରାମର ଗୌନ୍ତିଆ ମାନଙ୍କ ଉପରେ ପଞ୍ଜା ପକାଇଲେ । ଗୌନ୍ତିଆମାନେ ଜମି, ଧାନ, ଟଙ୍କା ଦେଇ ଲୋକଙ୍କୁ ଯୁଦ୍ଧକୁ ଯିବାକୁ ପ୍ରବର୍ତ୍ତାଇଲେ ଓ ତାଙ୍କର ଅକାଳ ମୃତ୍ୟୁ ଯଦି ହୁଏ ତାଙ୍କର ପରିବାରକୁ ପ୍ରତିପୋଷଣ କରିବାର ଦାୟିତ୍ୱ ନେଲେ । ମୋ ନିଜ ଗ୍ରାମ ସାତକମାରୁ ଗୁବିନ୍ଦ ଗଣ୍ଡା ଓ ମହାଦେବ ଗଣ୍ଡା ଉକ୍ତ ଯୁଦ୍ଧକୁ କୁଲୀ କାମ କରିବାକୁ ଯାଇଥିଲେ । ଆମର ଗ୍ରାମର ଗୁବିନ୍ଦ ଗଣ୍ଡାକୁ ମୋର ବାପା ପ୍ରାୟ ୨ ଏକର ଜମି ଦେଇ ଅଛନ୍ତି ଓ ବର୍ତ୍ତମାନ ସୁଦ୍ଧା ତାର ପୁତ୍ର ଠାକୁର ବାଘ (ଗଣ୍ଡା) ଉକ୍ତ ଜମି ନିଜ ନାମରେ ରେକର୍ଡ କରାଇ ଭୋଗ ଦଖଲ କରୁଅଛି । ମହାଦେବଗଣ୍ଡା (ପାଣ) ମୋ ନିକଟସ୍ଥ ଗ୍ରାମ କୁଟୁରା ଚୁଆଁ ଗ୍ରାମ ଜଗତ ରାମ-ଗୌନ୍ତିଆଙ୍କ ତରଫରୁ ମୁଢ ପଞ୍ଜା ପାଇଥିଲା । ସେ ପାଇଥିବା ଜମି ବିକ୍ରି କରି ଦେଇଅଛି ଓ ତାର ପୁତ୍ରନାତି ନାହାନ୍ତି । ବାମଣ୍ଡା ରାଜକର୍ମଚାରୀମାନେ ପ୍ରଜାଙ୍କ ଠାରୁ ଜବରନ୍ ଯୁଦ୍ଧ ଚାନ୍ଦା ଅସୁଲ କରିବାକୁ ଲାଗିଗଲେ । ଜାତୀୟ କଂଗ୍ରେସର ଡାକରାରେ ଶ୍ରୀ ଦାଶରଥି ମିଶ୍ର ପ୍ରକାଶ୍ୟ ଭାବେ ଏହି ଯୁଦ୍ଧ ପଞ୍ଜା (ଲୋକ ଓ ଟଙ୍କା) ମାଗଣର ପ୍ରତିରୋଧ କଲେ । ପୁଲିସ ତାଙ୍କ ନାମରେ ଭାରତ ରକ୍ଷା ଆଇନ ବଳରେ କେଶ କଲେ । ବିଚାର ସମାପନ ହେଲା ଓ ତାଙ୍କୁ କୋଡ଼ିଏ ଟଙ୍କା ଜରିମାନା ସହ ୨ ବର୍ଷ ସଶ୍ରମ କାରାଦଣ୍ଡ ଆଦେଶ ହେଲା ।

ସେ ଦେବଗଡ ଜେଲରେ ଏହା ଭୋଗ କଲେ । ଟ ୨୦/ ଙ୍କା ଜରିମାନା ତାଙ୍କର ଘର ୨ ଥର କୋରକ କରି ଅସୁଲ କରଗଲା । ଏହା ସ୍ନ ୧୯୪୦ମ: ର ଘଟଣା ।

ଏହି ଯୁଦ୍ଧ ଋଣ ନ ଦେବାକୁ ବାମଣ୍ଡାର ତତ୍କାଳିନ କଂଗ୍ରେସ କର୍ମୀ (୧) ବୃନ୍ଦରୟ ଗୌନ୍ତିଆ ସାଉଁନ୍ତମାଳ (୨) ଧରଣୀଧର ନାୟକ ନୂଆଁଡିହି (୩) ଦୟାନିଧି ପାଣିଗ୍ରାହୀ ବୁବୁଲପାଲି (୪) ଭବାନି ଚରଣ ପାଲ (୫) ରତ୍ନ କର ପଟେଲ ଗୁବିନ୍ଦପୁର (୬ ଦଶରଥ ନାୟକ ସାହାଜ ବାହାଳ (୭) ହୃଷିକେଶ ପଟେଲ ଗମ ତିଲେଇ ମାଳ (୮) ଗୌରୀଶଙ୍କର ମହାପାତ୍ର କିରଣାସନ (୯) ଉର୍ଦ୍ଦ ଚନ୍ଦ୍ର ଚୌଧୁରୀଧୁଡପାଲି (୧୦) ଦିନବନ୍ଧୁ ଚୌଧୁରୀ କେନାଭୁପା (୧୧) ରମଣୀ ରଞ୍ଜନ ପଟେଲ ବନ୍ଧପାଲି (୧୨) ବୃନ୍ଦାବନ ପଟେଲ କେନାଭିପା (୧୩) ଛାଳ ଚୌଧୁରୀ (୧୪) ବିଶ୍ୱନାଥ କର (୧୫) ଲେଖକ ଓ ଅନ୍ୟାନ୍ୟ ଅନେକ ସଚେତନ ବ୍ୟକ୍ତି ବାମଣ୍ଡାର ପୁରପଲ୍ଲୀରେ ଗୁପ୍ତରେ ପ୍ରଜାମାନଙ୍କୁ ପ୍ରବର୍ତ୍ତାଉ ଥିଲେ ମଧ୍ୟ ତତ୍କାଳିନ ସ.ଡ଼.ଅ. ଅଦ୍ୱୈତ ଚରଣ ମହାନ୍ତଙ୍କ ଧମକ ଚମକ-ଅର୍ଥାତ କୋର୍ଟ ନୋଟିସ କରି ପୁଲିସ କନଷ୍ଟେବଲ ପଠାଇ କୋର୍ଟକୁ ବା ଥାନାକୁ ଧରି ଆଣି ଭେକ ଉପାୟରେ ତାଙ୍କୁ ଦିନ ପରେ ଦିନ ବସାଇ ରଖିବା ହେତୁ ଜମିବାଡ ବନ୍ଧକ କରି ଖନି କଂସା ଓ ଗହଣା ଇତ୍ୟାଦି ବିକ୍ରି କରି ଯୁଦ୍ଧ ଋଣ ଦେବାକୁ ବାଧ୍ୟ ହେଲେ । ରାଜ୍ୟର ଅନ୍ୟାନ୍ୟ ଅଞ୍ଚଳର ଅବସ୍ଥା ମଧ୍ୟ ଏହି ପରି ହେଲା ।

ସ୍ନ ୧୯୪୨ ମ: ଅଗଷ୍ଟ ମାସରେ ମହାତ୍ମାଗାନ୍ଧୀ ଓ ଭାରତ ଜାତୀୟ କଂଗ୍ରେସ ଇଂରେଜ ସରକାରଙ୍କୁ ଭାରତ ଛାଡ ଚାଲିଯିବାକୁ ଡାକରଦେଲେ । ଉପରୋକ୍ତ କର୍ମୀମାନେ ଏହି ଆନ୍ଦୋଳନକୁ ରାଜ୍ୟ ଭିତରେ ଚେତାଉଥିଲେ । କିନ୍ତୁ (୧) ଗୋପାଳ ଚନ୍ଦ୍ର ପାଣିଗ୍ରାହୀ (୨) ଚନ୍ଦ୍ର ଶେଖର ପାଣିଗ୍ରାହୀ ଓ (୩) ରଜିବ ଲୋଚନ ପଟେଲ ମହାତ୍ମାଙ୍କ ଡାକରରେ ରହି ପାରିଲେ ନାହିଁ । ସେମାନେ ସମ୍ବଲପୁର ଜିଲ୍ଲା ମଧ୍ୟକୁ ଯାଇ ସତ୍ୟାଗ୍ରହରେ ଯୋଗ-ଦେଲେ ଓ କାରବରଣ କଲେ ।

ସ୍ନ ୧୯୪୨ ମଃ ରେ ଦାଶରଥି ମିଶ୍ର ତାଙ୍କର ୨ ବର୍ଷ ସଶ୍ରମ କାରାଦଣ୍ଡ ଭୋଗ ଶେଷ କରି ପୁନଶ୍ଚ ବାମଣ୍ଡା ପ୍ରଜାଙ୍କ ସମ୍ମୁଖରେ ଛିଡା ହେଲେ । ଏହି ସମୟରେ ତାଙ୍କର ଆର୍ଥିକ ଅବସ୍ଥା ଅତି ଶୋଚନୀୟ ହୋଇ ଯାଇଥିଲା ।

ସ୍ନ ୧୯୪୨ ମ: ରେ ବଙ୍ଗଦେଶ ( ବର୍ତ୍ତମାନ ବଙ୍ଗଳାଦେଶ + ପଶ୍ଚିମବଙ୍ଗ ) ରେ ଦୁର୍ଭିକ୍ଷ ପଡ଼ିଲା । ବାମଣ୍ଡାର ରାଜା ତାଙ୍କର ଦେଓ୍ୱାନ ଅରୁଣ କୁମାର ଘୋଷଙ୍କ ମନ୍ତ୍ରଣା କ୍ରମେ ବାମଣ୍ଡା ପ୍ରଜାମାନଙ୍କ ଠାରୁ ଏକ ଟଙ୍କିଆ ଚାଉଳ କିଣିଲେ ତାଙ୍କ ରାଣୀ ଜ୍ୟୋତି ମଞ୍ଜରୀଙ୍କ ନାମରେ । ବାମଣ୍ଡା ପ୍ରଜାମାନେ ବାମଣ୍ଡା ବାହାରେ କେବେ ମଧ୍ୟ ଧାନ ଚାଉଳ ବିକ୍ରି କରି ପାରନ୍ତ ନାହିଁ । ସୀମାନ୍ତ ସ୍ଥାନ ମାନଙ୍କରେ ସରକାରଙ୍କ ତରଫରୁ ଜଗୁଆଳି ଥାନ୍ତି । ରାଣୀ ଯେତେବେଳେ ଏକ ଟଙ୍କିଆ ଚାଉଳ କିଣିଲେ ଏହି ଜଗୁଆଳିଙ୍କ ସଂଖ୍ୟା ବଢାଇଦେଲେ ଓ ପୁଲିସ କର୍ମଚାରୀଙ୍କୁ ଲଗାଇ ଟଙ୍କାକୁ ଆଠସେର ଲେଖାଏଁ ଚାଉଳ କିଣିଲେ । ଉକ୍ତ ଚାଉଳ ପ୍ରଜାମାନେ ବିନାଭଡ଼ାରେ ଗୋରୁଗାଡ଼ିରେ ବାମ୍ରା ଷ୍ଟେସନ ପର୍ଯ୍ୟନ୍ତ ପହଞ୍ଚାଇ ଦେଉଥିଲେ । ସେହି ଚାଉଳ କଲିକତାର ଇସ୍ପାହାନି କୋମ୍ପାନୀ ଟଙ୍କାକୁ ସେ ୨ର ଲେଖାଏଁ କିଣି ନେଲେ ।

ଏହି ସମୟରେ ବାମଣ୍ଡାରେ ଗ୍ରାମ ପଞ୍ଚାୟତ ପ୍ରଥା ସରକାର ଚାଲୁ କଲେ ସ୍ନ ୧୯୪୨-୪୩ ରୁ ୪୪-୪୬ ପର୍ଯ୍ୟନ୍ତ । ପଞ୍ଚାୟତ ସଭ୍ୟମାନଙ୍କୁ ସରକାର ମନୋନୟନ କରି ନିଯୁକ୍ତ କଲେ । ଉପରୋକ୍ତ ୨ଟି ବିଷୟ (ଚାଉଳ କିଣା ଓ ପଞ୍ଚାୟତ ସଭ୍ୟ ମନୋନୟନ) ଉପରେ ପ୍ରକାଶ୍ୟ ସଭାରେ ଦାଶରଥି ମିଶ୍ର ପ୍ରତିବାଦ କଲେ ।

ଏହିପରି ଭାବରେ ରାଜଦରବାରର କୋଠି ଖଟିବା ବାମଣ୍ଡା ପ୍ରଜାଙ୍କ ଦେହସୁହା ହୋଇ ଯାଇଥିଲେ ମଧ୍ୟ କେତେକଣ (ପ୍ରମୁଖ ଲୋକ) ଆନ୍ଦୋଳନକାରୀ ଅନ୍ୟାୟ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରୁଥାନ୍ତି ।

ଯେଉଁମାନେ ସମୟ ୨ ରେ ଏହିପରି ପ୍ରତିବାଦ କରୁଥାନ୍ତି ସରକାର ସମୟ ପଡ଼ିଲେ ତାଙ୍କ ନାମରେ ମିଥ୍ୟା ମକଦ୍ଦମା କରି ହଇରାଣ କରିବାକୁ

ଭୁଲନ୍ତୁ ନାହିଁ । ଗୋଟିଏ ଉଦାହରଣ – ସ୍ମ ୧୯୪୪ ମ: ରେ ହାଉନ୍ତମାଳ ମୌଜା ପାଣ ସାହିରେ ମଦଖାଇ ପରସ୍ପର ମଧ୍ୟରେ ମାଡହେଲେ । ଗ୍ରାମର ଚୌକିଦାର ବଙ୍ଗାଳୀ ପାଣ ଚୈତନ୍ୟ ପାଣକୁ ସାଂଘାତିକ ଭବେ ମାଡ ଦେଲା । ଚୈତନ୍ୟ କୁଚିଣ୍ଡା ଡାକ୍ତର ଖାନାରେ ମୃତ୍ୟୁ ବରଣ କଲା । ପୂର୍ବ ଆକ୍ରୋଶ ହେତୁ କୁଚିଣ୍ଡା ପୁଲିସ ଗ୍ରାମର ଗୌନ୍ତିଆ ବୁଢଗୟକୁ (ଭରତ ଦଣ୍ଡବିଧି ଆଇନ ୩୦୨/୧୦୯) ସାହାଯ୍ୟକାରୀ ହିସାବେ ଗିରଫ କରି ପାଞ୍ଚମାସ ପର୍ଯ୍ୟନ୍ତ କୁଚିଣ୍ଡା ଜେଲ ହାଜତରେ ରଖିଦେଲେ ।

ସ୍ମ ୧୯୪୪ ମ ରେ ବାମଣ୍ଡା ଦେଓ୍ୱାନ, ଖେଡପୁର ରଜାବନ୍ଧରେ ନିଜେ ଜାଲ ପକାଇ ମାଛ ଧରି ନେଲେ । ଉକ୍ତ ମାଛ ଖାଇବାବେଳେ ତାଙ୍କ ଗଳାରେ ମାଛ କଣ୍ଟା ପଶିଗଲା । ସେ କଲିକତା ଯାଇ ଅପାରେସନ କରଇଲେ । କିନ୍ତୁ ତାଙ୍କର ମଧୁମେହ (Dabatis) ରୋଗଥିବା ହେତୁ ସେ ଆରୋଗ୍ୟ ହୋଇ ପାରିଲେ ନାହିଁ । ତାଙ୍କର ମୃତ୍ୟୁପରେ ବାମଣ୍ଡାର ସହକାରୀ ଦେଓ୍ୱାନ ବସନ୍ତ କୁମାର କର ବାମଣ୍ଡା ରାଜ୍ୟ ଦେଓ୍ୱାନ ହେଲେ ।

ତା ୧୫ । ୨ । ୧୯୪୬ ମ ରେ ଶ୍ରୀ ଦୟାନନ୍ଦ ଶତପଥୀ ସମ୍ବଲପୁର ଜିଲ୍ଲା କଂଗ୍ରେସ ଅଫିସରେ ପଶ୍ଚିମ ଓଡଶା ଗଡଜାତ ମାନଙ୍କର ଗୋଟିଏ କର୍ମୀ ସମ୍ମିଳନୀ ଡାକିଥିଲେ । ଏହି ସମ୍ମିଳନୀରେ ବଲାଙ୍ଗିର, ବାମଣ୍ଡା, ବଣାଇ, ରେଢାଖୋଲ, ସୋନପୁର, ସୁନ୍ଦରଗଡ, ଆଠମଲ୍ଲିକ ପ୍ରଭୃତି ରାଜ୍ୟ ମାନଙ୍କର ପ୍ରଜା ନେତାମାନେ ଯୋଗ ଦେଇଥିଲେ । ବାମଣ୍ଡାରୁ ପ୍ରଜାନେତା ଶ୍ରୀ ରତ୍ନାକର ପଟେଲ ଗୁବିନ୍ଦପୁର ଓ ଶ୍ରୀ ହୃଷିକେଶ ପଟେଲ ରମଟିଳାଇ-ମାଳ ଏହି ସମ୍ମିଳନୀରେ ଯୋଗଦେଇଥିଲେ । ଏମାନେ ସମସ୍ତେ ନିଜ ୨ ରାଜ୍ୟମାନଙ୍କର ପ୍ରଜାପୀଡନ ନୀତିର ସମାଲୋଚନା କରିଥିଲେ ଓ କେତେକ ପ୍ରସ୍ତାବ ଗ୍ରହଣ କରି ତାର ନକଲ ଓଡଶା ସରକାର ଉତ୍କଳ କଂ. କ., ଭରତ ସରକାର ଓ ଭରତ ଜାତୀୟ କଂଗ୍ରେସଙ୍କ ନିକଟକୁ ପଠାଇଥିଲେ ।

ତା ୨୦ । ୬ । ୧୯୪୬ । ୬ ପୂର୍ବ ଶ୍ରୀ ହରେକୃଷ୍ଣ ମହତାବ, ରାଧାନାଥ ରଥ, ନବକୃଷ୍ଣ ଚୌଧରୀ, ସାରଙ୍ଗଧର ଦାସ, ପବିତ୍ର ମୋହନ

ପ୍ରଧାନ ଶ୍ରୀମତୀ ମାଳତି ଚୌଧୁରୀ ପ୍ରମୁଖ କଂଗ୍ରେସ ନେତାମାନେ ଓଡ଼ିଶା ଗଡ଼ଜାତ କର୍ମୀ ସମ୍ମିଳନୀ ଡାକି ଓଡ଼ିଶା ସମସ୍ତ ଗଡ଼ଜାତ ରଜାମାନଙ୍କର ପ୍ରଜାମାନଙ୍କ ପ୍ରତି ଚଳିଥିବା ଅନ୍ୟାୟ ଶାସନର ଧାରା ବିବରଣୀ ଶୁଣିଲେ ଓ କର୍ମୀମାନଙ୍କୁ ରଜାମାନଙ୍କର ଅତ୍ୟାଚାର ଅହିଂସା ନୀତିରେ ସହ୍ୟ କରିବାକୁ ଉପଦେଶ ଦେଲେ ଓ ପ୍ରତିକାର ନିମନ୍ତେ କେତେକ ପ୍ରସ୍ତାବ ଗ୍ରହଣ କରି ତାର ନକଲ ଭାରତ ସରକାରଙ୍କ ଓ ଭାରତୀୟ ଜାତୀୟ କଂଗ୍ରେସ ନିକଟକୁ ପଠାଇଲେ । ଏହି ସମୟରୁ ଗଡ଼ଜାତ ମାନଙ୍କର ଶାସନ ଭାର ପ୍ରାଦେଶିକ ସରକାର ମାନେ ବହନ କରିବା ମଧ୍ୟ ମହତାବ ଭାରତ ଜାତୀୟ କଂଗ୍ରେସଙ୍କ ନିକଟରେ କରୁଥିଲେ ଓ ଭାରତ ରାଜନ୍ୟ ମଣ୍ଡଳୀଙ୍କ ଠିକିଏ ଚେତନା ଜାତ ହେଲା । ଭାରତୀୟ ରଜାମାନେ ତାଙ୍କ ପ୍ରଜାମାନଙ୍କ ପ୍ରତି ଠିକିଏ ଉଦାର ହେବା ନିମନ୍ତେ The Chancellor of the Indian Princess, କେତେକ ଘୋଷଣା କଲେ ତା ୧ । ୯ । ୧୯୪୬ ମଃ ରେ ।

ଉପରୋକ୍ତ ଭାରତୀୟ ରାଜନ୍ୟ ମଣ୍ଡଳୀ ସଭାପତିଙ୍କ ଘୋଷଣାର କିୟଦଂଶ ବାମଣ୍ଡା ରାଜଦରବାର ଇସ୍ତାହାର ୨୩/୪୬ ଯୋଗେ ବାମଣ୍ଡା ଗେଜେଟରେ ନିମ୍ନ ମତେ ପ୍ରକାଶ ପାଇଲା :—

"ଦେବଗଡ ନଃ ୨୩,୪୬ ମଃ ମେମ୍ବର ଅଫ୍ ପ୍ରିନ୍‌ସେସର ଗତ ବୈଠକରେ ତହିଁର ଚାନ୍‌ସେଲର (ସଭାପତି) ନିମ୍ନ ପ୍ରକାରେ ଯେଉଁ ଘୋଷଣା କରିଥିଲେ ତାହା ବାମଣ୍ଡା ଦରବାର ସମର୍ଥନ କରୁଅଛନ୍ତି ।

ନଃ ୧ - କାହାରିକୁ ସ୍ୱାତନ୍ତ୍ର୍ୟଚ୍ୟୁତ କରାଯିବ ନାହିଁ । କିମ୍ବା କାହାରି ଉତ୍ତରାଧିକାର ଧନସମ୍ପତ୍ତିରେ ବେଆଇନ ଭାବେ ପ୍ରବେଶ, ତହିଁରୁ ବିତାଡ଼ିତ ବା ଚ୍ୟୁତ କରାଯାଇ ପାରିବ ନାହିଁ ।

ନଃ ୨ - ପ୍ରତ୍ୟେକଙ୍କ ହେବିଅସକୋରପୋସ (ସିଧା ସଳଖ ହାଇ-କୋର୍ଟଠାରେ) ଦରଖାସ୍ତ କରିବାର ଅଧିକାର ରହିବ । କେବଳ ଯୁଦ୍ଧ ବିଦ୍ରୋହ ବା ଗୁରୁତର ଅଭ୍ୟନ୍ତରିଣ ବିଶୃଙ୍ଖଳା ସମୟରେ ଏହା ରଦ୍ଦ କରାଯାଇ ପାରେ ।

ନ: ୩- ପ୍ରତ୍ୟେକେ ସ୍ୱାଧୀନ ଭବେ ମତ ପ୍ରକାଶ କରିପାରିବେ, ସ୍ୱାଧୀନ ଭବେ ଅନୁଷ୍ଠାନ ଦଳଗଢି ପାରିବେ ଏବଂ ଆଇନ ଓ ନୀତି ବିରୁଦ୍ଧ ହୋଇ ନ ଥିବା ଓ ଅସ୍ତ୍ରଶସ୍ତ୍ରାଦି ନ ଘେନି କୌଣସିଠାରେ ଶାନ୍ତ ପୂର୍ଣ୍ଣ ଭବରେ ସମବେତ ହୋଇପାରିବେ ।

ନ: ୪- ପ୍ରତ୍ୟେକଙ୍କ ବିବେକ, ସ୍ୱାତନ୍ତ୍ର୍ୟ ଓ ଧର୍ମଅବଲମ୍ବନ କରି ତଦନୁସାରେ ଚଳିବା ଅଧିକାର ରହିବ ।

ନ: ୫- ଜାତି ଧର୍ମ ନିର୍ବିଶେଷରେ ସମସ୍ତେ ଆଇନତଃ ସମାନ ।

ନ: ୬- ବିଗାଡ଼ ପ୍ରଥା ରହିବ ନାହିଁ, ଜୋର ଜବରଦସ୍ତ କୌଣସି କାର୍ଯ୍ୟ ବା ଅର୍ଥ, ରସଦ ଆଦି ଅସୁଲ ହୋଇ ପାରିବ ନାହିଁ ।

ଆଦେଶମତେ — ସ୍ୱା: ବି: କେ: କର ଦେଓ୍ୱାନ - ବାମଣ୍ଡା ଷ୍ଟେଟ"

ଏଥିରୁ ସ୍ୱତଃ ପାଠକେ ବୁଝି ନେବେ ଯେ ଯାହା କିଛି ଅନ୍ୟାୟ ହେବ ନାହିଁ ବୋଲି ଉପରୋକ୍ତ ମତେ ବାମଣ୍ଡା ଗେଜେଟରେ ପ୍ରକାଶ ପାଇଲା ସେ ସବୁ ବଡ ଆକାରରେ ଘଟୁଥିଲା । ଘୋଷଣା ପ୍ରକାଶ ପାଇଲା କିନ୍ତୁ ତଳ ଠାରୁ ଉପର ପର୍ଯ୍ୟନ୍ତ କର୍ମଚାରୀମାନେ ଅଭ୍ୟାସ ଛାଡ ପାରିଲେ ନାହିଁ । ଗେଜେଟର ଘୋଷଣା ଗେଜେଟରେ ହିଁ ରହିଲା । ତାହା ଜନସାଧାରଣଙ୍କୁ ଜଣାଇବାର କୌଣସି ପ୍ରଣାଳୀ ନ ଥିଲା । ଗେଜେଟ ସର୍ବସାଧାରଣରେ ବିକ୍ରି ହୁଏ ନାହିଁ । ବାମଣ୍ଡା ପ୍ରଜାମାନେ ଉକ୍ତ ଗେଜେଟ ପଢ଼ିବାକୁ ପାଆନ୍ତି ନାହିଁ । ଅନ୍ୟ ପକ୍ଷେ ବାମଣ୍ଡାର ନିରୀହ ପ୍ରଜା ଓ ଗୌନ୍ତିଆ ମାନେ ମଧ୍ୟ ଈଶତ୍ୟା ପରମ୍ପରା ଗତ ବୋଲି କର ହୋଇ ଯାଇଥିଲେ କହିଲେ ଅତ୍ୟୁକ୍ତି ହେବ ନାହିଁ । ସୁତରାଂ ସେମାନଙ୍କ ମଧ୍ୟରୁ ଶତକଡା ୯୯ଭାଗ ଅନ୍ୟାୟ ସବୁ ସହ୍ୟ କରିବାକୁ କୁଣ୍ଠିତ ହେଉନ ଥିଲେ । ଏଣୁ ଏହି ବିଷୟ ପ୍ରଚାର କରିବା ଦରକାର ହେଲା ଓ "ବାମଣ୍ଡା ପ୍ରଜାମଣ୍ଡଳର ନିବେଦନ" ନାମକ ଖଣ୍ଡେ ପ୍ରଚାର ପତ୍ର ଛପାଇ ୦୧— (ଏକ ଅଣା) ମୂଲ୍ୟରେ ବିକ୍ରି କରଗଲା ।

Chanceller of the Indian Princess ଙ୍କ ଏହି ଘୋଷଣା ପରେ ସ୍ନ ୧୯୪୬ ମ. ସେପ୍ଟେମ୍ବର ମାସ ମଧ୍ୟ ଭାଗରେ ଗଡଜାତ ଗାନ୍ଧି ଶ୍ରୀ ସାରଙ୍ଗଧର ଦାସ ଗୁବିନ୍ଦପୁର (ବାମରା ଷ୍ଟେସନ)କୁ ଆସି ସମ୍ବଲପୁରର ବିଶିଷ୍ଟ କଂଗ୍ରେସ କର୍ମୀ ଓ ତତ୍କାଳିନ ବିଧାନ ସଭାସଭ୍ୟ (M. L. A.) ଶ୍ରୀ ପ୍ରହଲ୍ଲାଦ ରାୟ ଲଠଙ୍କ ଜ୍ୟେଷ୍ଠ ଭ୍ରାତା ଶ୍ରୀ ବୈଦ୍ୟନାଥ ଲଠଙ୍କ ଗୃହରେ ଅବସ୍ଥାନ କଲେ । ଶ୍ରୀ ବୈଦ୍ୟନାଥଙ୍କ ସୁଯୋଗ୍ୟ ପୁତ୍ର ଶ୍ରୀ ଜଗଦିଶ ପ୍ରସାଦ ଲଠ ( ବର୍ତ୍ତମାନ ସମ୍ବଲପୁରର ଧନକୁବେର ତଥା ବିଶିଷ୍ଟ ସମାଜସେବୀ) ଙ୍କ ସାହାଯ୍ୟରେ ଗୁବିନ୍ଦପୁର ନିକଟବର୍ତ୍ତୀ ଗ୍ରାମ ମାନଙ୍କର କେତେକ କଂଗ୍ରେସ କର୍ମୀ (୧) ରତ୍ନାକର ପଟେଲ (୨) ଭବାନୀ ଚରଣ ପାଲ (୩) ଜୟନାରାୟଣ ଶର୍ମା ଗୁବିନ୍ଦପୁର (୪) ରାଧାନାଥ ଶର୍ମା ବୁଢୁଲପାଲି (୫) ଉଦେଚନ୍ଦ୍ର ଚୌଧୁରୀ ବେଲମୁଣ୍ଡାଙ୍କୁ ଡକାଇ (୬) ଜଗଦିଶ ପ୍ରସାଦ ଓ (୭) ବୈଦାନାଥ ଲଠଙ୍କୁ ଏକତ୍ରରେ କହିଲେ; "ପ୍ରାୟ ସମସ୍ତ ଗଡଜାତରେ ପ୍ରଜାମଣ୍ଡଳ ଗଠନ କରି ପ୍ରଜାମାନେ ରାଜାମାନଙ୍କର ଅନ୍ୟାୟ ଶାସନ ବିରୁଦ୍ଧରେ ଜନମତ ସୃଷ୍ଟି କରୁଅଛନ୍ତି ତୁମ୍ଭେମାନେ ସେପରି କାହିଁକି କରୁ ନାହଁ ପ୍ରଜାମଣ୍ଡଳ ଗଠନ କର ଓ ସଭାସମିତି କର - ଇତ୍ୟାଦି ୨ ।"

ତହୁଁ ସେ କୁଚିଣ୍ଡାକୁ କଂ କର୍ମୀ ଶ୍ରୀଭାନୁଶଙ୍କର ଯୋଶୀ ଝାରସୁଗୁଡାଙ୍କ ସହ ଆସିଲେ ଓ ଗୋଟିଏ ସଭା କଲେ । ଗୌରୀଶଙ୍କର ମହାପାତ୍ର ଦିନ ବନ୍ଧୁ ଚୌଧୁରୀ ଓ ଲେଖକଙ୍କ ଯତ୍ନରେ କୁଚିଣ୍ଡା ନିକଟବର୍ତ୍ତୀ ଗ୍ରାମ ମାନଙ୍କରୁ ବହୁତ ଲୋକ ଜମା ହୋଇଥିଲେ । ସଭାରେ ଶ୍ରୀ ଦାସ ମହାତ୍ମା ଗାନ୍ଧିଙ୍କ ଡାକରରେ କିପରି ଭାରତବାସୀ ଇଂରେଜ ସରକାରଙ୍କ ଶାସନାଧୀନ ନ ରହି ନିର୍ବାଚନ ଜରିଆରେ ଲୋକ ପ୍ରତିନିଧି ଶାସନ ପ୍ରତିଷ୍ଠା କରିବାକୁ ବଦ୍ଧ ପରିକର ହୋଇ ପ୍ରାୟ କାର୍ଯ୍ୟ ହାସଲ କରିବାକୁ ବସିଲେଣି । ଇଂରେଜଙ୍କ ବାହୁଛାୟା ତଳେ ଯେଉଁ ଛୋଟ ୨ ରାଜାମାନେ ରାଜ୍ୟବାସୀଙ୍କୁ ଶୋଷଣ କରୁଛନ୍ତି ଓ ନିଜ ୨ ଢଙ୍ଗା ପିଟା ଶାସନ ଚଳାଉଛନ୍ତି ସେ ସବୁ ମଧ୍ୟ ଭାଙ୍ଗି ଲୋକ ପ୍ରତିନିଧି ଶାସନ ପ୍ରତିଷ୍ଠା କରିବାକୁ ହେବ । ଉକ୍ତ ସଭାରେ ଭାନୁଶଙ୍କର ଯୋଶୀ ମଧ୍ୟ ଭାଷଣ ଦେଇଥିଲେ । ଶ୍ରୀ ଦିବ୍ୟରାଜ ସିଂ କୁଚିଣ୍ଡା ଉକ୍ତ ସଭାର ପ୍ରତିବାଦ କରି କହିଥିଲେ "ବାମଣ୍ଡାରେ ବିଦେଶୀ

ଲୋକ କେହି ଶାସନ କରୁ ନାହାନ୍ତି । ଏଠାରେ ପ୍ରଜାମାନେ ସୁଖରେ ଅଛନ୍ତି । ଚୋରୀ ଡକାୟତି, ଲାଞ୍ଚ ଘୋଷ ବାମଣ୍ଡାରେ ନାହିଁ । ୫୦/୬ (ଛଅ ଅଣା) ପଇସା ଖର୍ଚ୍ଚ କଲେ ଲୋକେ ନ୍ୟାୟ ଅବିଳମ୍ବେ ପାଇ ପାରୁଛନ୍ତି । ତାର ଉତ୍ତରରେ ଶ୍ରୀ ଦାସ ଲୋକ ପ୍ରତିନିଧି ଶାସନର ଉପା-ଦେୟତା ବିଷୟରେ ବୁଝାଇବା ସଙ୍ଗେ ୨ କହିଲେ ଯେ ଗରିବ ଅଡେ ଯଦି ରବଣ ରାଜ୍ୟ ହୋଇଯିବ ତେବେ ମଝିରେ ବାମଣ୍ଡା ଖଣ୍ଡେ ଛୋଟ ରାମରାଜ୍ୟ ହୋଇ ରହି ପାରିବ ନାହିଁ । ଶ୍ରୀ ଯୋଶୀ କହିଲେ, ଭାରତର ସ୍ୱାଧୀନତା ଆନ୍ଦୋଳନ ଏ ଗୋଟିଏ ପ୍ରଳୟଙ୍କରୀ ତୋଫାନ ଭାରତ କାହିଁକି ସମଗ୍ର ପୃଥିବୀରେ ଏହି ତୋଫାନ ବ୍ୟାପିଯିବ । ବାମଣ୍ଡାବାସୀ ଖଣ୍ଡେ ଛତା ଧରି ଏହି ତୋଫାନର ପ୍ରତିରୋଧ କରି ପାରିବେ ନାହିଁ । ସଭ ଶେଷରେ ଉପସ୍ଥିତ ଜନତା ଖୁବ ଉତ୍ସାହିତ ହୋଇଥିଲେ ।

ତହିଁ ପରଦିନ ଗୁବିନ୍ଦପୁରର ଉପରୋକ୍ତ କର୍ମୀମାନଙ୍କ ଉଦ୍ୟମରେ ତଥା ଯୁବନେତା ଶ୍ରୀ ଜଗଦିଶ ଲାଠଙ୍କ ଅକୁଣ୍ଠିତ ବ୍ୟୟରେ ସାଜସଜ୍ଜା ସହ ଗୁବିନ୍ଦପୁରରେ ଗୋଟିଏ ବଡ ସଭ ହେଲା । ସେଠାରେ ସୀମାନ୍ତବର୍ତ୍ତୀ ଗାଙ୍ଗପୁର ଷ୍ଟେଟରୁ ମଧ୍ୟ ବହୁତ ଲୋକ ଆସିଥିଲେ । ଲୋକେ ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେବାକୁ ଖୁବ ଉତ୍ସାହିତ ହେଲେ । ଶ୍ରୀ ଦାସ, ବାମଣ୍ଡା, ବଣାଇ ଓ କେନ୍ଦୁଝର ରାଜ୍ୟ ତ୍ରୟର ପ୍ରଜାମଣ୍ଡଳ କର୍ମୀ ମାନଙ୍କୁ ଉତ୍ସାହିତ କରି ସଂଗଠନ କାର୍ଯ୍ୟକୁ ଆଗେଇ ନେବା ଭାର ଶ୍ରୀ ବିଜୟ କୁମାର ପାଣିଙ୍କ ଉପରେ ନ୍ୟସ୍ତ କରିଥିଲେ ।

ତା ୧୧ । ୧୧ । ୧୯୪୬ ମ.ରେ କୁଚିଣ୍ଡା ଥ ଡ. ରମଡିଲାଇମାଳ ମୌଜାରେ ଗୋଟିଓ ଛୋଟ ସଭ ହୋଇ ନିମ୍ନଲିଖିତ ସଭ୍ୟମାନଙ୍କୁ ନେଇ "ବାମଣ୍ଡା ଷ୍ଟେଟ ପ୍ରଜାମଣ୍ଡଳ" ଏଡହକ କମିଟୀ ଗଠନ କରଗଲା । ସଭପତି-ରାଜିବ ଲୋଚନ ପଟେଲ ଉଲୁଣ୍ଡା । ସମ୍ପାଦକ ରତ୍ନାକର ପଟେଲ ଗୁବିନ୍ଦପୁର, କୋଷାଧ୍ୟକ୍ଷ - ହୃଷିକେଶ ପଟେଲ ରମଡିଲାଇମାଳ, ସଭ୍ୟ - ଦାଶରଥି ମିଶ୍ର, ରମଝାଲୀ, ରମଚନ୍ଦ୍ର ନାୟକ-ବଗାଡ଼ହି ଛାଳ ଚୌଧୁରୀ, ଦାଶରଥି ପଟେଲ ପାଟୁଆଭଡ଼, ପୂର୍ଣ୍ଣଚନ୍ଦ୍ର ପଟେଲ, ଉଲୁଣ୍ଡା । ଏହି କମିଟର ଅଫିସ ଗୁବିନ୍ଦପୁରରେ ରହିଲା । ଏହି କମିଟିର ଉଦ୍ୟମରେ ଓ

ଶ୍ରୀ ଭଗଡିଶ ଲାଠଙ୍କ ପୃଷ୍ଠ ପୋଷକତାରେ ସଭ୍ୟଭୁକ୍ତ କରିବା ନିମନ୍ତେ ୫୦ । (ଷୋଳ ଅଣିଆ) ରସିଦ ବହି ଓ ଖଣ୍ଡେ ପ୍ରଚାର ପତ୍ର ମଧ୍ୟ ଛପା ଗଲା । (ତାର ଖଣ୍ଡେ ନମୁନା ଏଥି ସାମିଲ କରଗଲା) ଉକ୍ତ ପ୍ରଚାର ପତ୍ର ବିତରଣ ହେବାରୁ ବାମଣ୍ଡାରେ ବହୁଲୋକ ଷୋଳଅଣିଆ (ବର୍ତ୍ତମାନ ପଚିଶ ପଇସା) ସଭ୍ୟ ଭୁକ୍ତ ହେଲେ । ଗ୍ରାମେ ୨ ଘରେଇ ବୈଠକମାନ ବସି ଲୋକେ ଦାୟିତ୍ୱ ମୂଳକ ଶାସନ ବିଷୟରେ ଆଲୋଚନା କରିବାକୁ ଲାଗିଲେ ।

ବାମଣ୍ଡାରେ ଗୁବିନ୍ଦପୁରରେ ମକର ସଂକ୍ରାନ୍ତ ଦିନ ଗୋଟିଏ ବଡ ମକର ଯାତ୍ରା ହୁଏ । ଏଠାକୁ ବାମଣ୍ଡା, ବଣାଇ, ଗାଙ୍ଗପୁର ରାଜ୍ୟ ଓ ସମ୍ବଲପୁର ଜିଲ୍ଲାରୁ ବହୁ ଲୋକ ଯାତ୍ରା ଦେଖିବାକୁ ଆସନ୍ତି । ତା ୧୪ । ୧ । ୧୯୪୭ ମ: ଏହି ମକରଯାତ୍ରା ଦିନ ଗୋଟିଏ ସ୍ଥାୟୀ ବାମଣ୍ଡା ପ୍ରଜାମଣ୍ଡଳ କମିଟୀ ଗଠନ କରିବାର ପ୍ରସ୍ତାବ ରଖି ଓ ତାକୁ ରେଜିଷ୍ଟ୍ରୀ କରିବାକୁ ମନସ୍ଥ କରି ସମ୍ପାଦକ ଶ୍ରୀ ରତ୍ନାକର ପଟେଲ ନିମ୍ନଲିଖିତ ବିଶିଷ୍ଟ ଗାନ୍ଧିବାଦୀ କର୍ମୀ (୧) ଶିବ ନାରାୟଣ ପାଢୀ ସମ୍ବଲପୁର (୨) ଦ୍ୱାରିକା ପ୍ରସାଦ ମିଶ୍ର, ରାଜଗାଙ୍ଗପୁର (୩) ଶଶୀ ଭୂଷଣ ମିଶ୍ର କୁଲୁଙ୍ଗା (୪) ଧନଞ୍ଜୟ ମହାନ୍ତି ଉଦିତ ନଗର (୫) ଗୌରୀଶଙ୍କର ଗୟଗୁରୁ, ସମ୍ବଲପୁର (୬) ସତ୍ୟବାଦୀ ପାଣି ବାରକୋଟଙ୍କୁ ପୂର୍ବରୁ ନିମନ୍ତ୍ରଣ କରିଥିଲେ । ଉକ୍ତ ସଭରେ ଆଲୋଚନା କରିବା ନିମନ୍ତେ ବାମଣ୍ଡା ଷ୍ଟେଟ ଗେଜେଟର ସମସ୍ତ ସଂଖ୍ୟା ଓ ବାମଣ୍ଡା ଷ୍ଟେଟ Administration Report ପାଇବାକୁ ବାମଣ୍ଡା ଦରବାରରେ ପ୍ରାର୍ଥନା କରି ଥିଲେ । ସେ ଗେଜେଟ ଓ ରିପୋର୍ଟ ସେମାନେ ବା କାହିଁକି ଦିଅନ୍ତେ ? ଅନ୍ୟପକ୍ଷେ ଏହି ସଭକୁ କିପରି ଭଣ୍ଡୁର କରିବେ ତାର ବ୍ୟୁହ ରଚନା କରିବାରେ ଲାଗିଗଲେ ବାମଣ୍ଡା ଦରବାର ।

ଏହାର ପ୍ରଥମ ପଦକ୍ଷେପରେ – ଶ୍ରୀ ହୃଷିକେଶ ପଟେଲ ନି: ରମଡିଲାଇମାଳ ତା ୧୨-୧-୧୯୪୭ ମ: ରାତ୍ରରେ ନିଜ ଘରେ ଶୋଇଥିବା ବେଳେ କୁଚିଣ୍ଡା ବିଟ ପୁଲିସ ଗ୍ରାମ ଚୌକିଦାର ଜରିଏ ତାଙ୍କୁ ଗ୍ରାମଦାଣ୍ଡକୁ ଡାକି ଆଣିଲେ । ସେ ଗ୍ରାମ ଦାଣ୍ଡକୁ ଆସିବା ମାତ୍ରେ ଗିରଫ କଲେ ଓ ହାତକଡ ଲଗାଇ କୁଚିଣ୍ଡା ଥାନାକୁ ଚାଲାଣ କଲେ । ଭରତ ଦଣ୍ଡବିଧି

ଆଇନର ଧା ୩୩୨ ଅନୁସାରେ ତାଙ୍କ ନାମରେ କେଶ ଡାଇରୀ କରି ଜେଲ୍ ହାଜିତକୁ ପଠାଇଦେଲେ । ଶ୍ରୀ ଦୟାନନ୍ଦ ଶତପଥୀଙ୍କ ନିକଟକୁ (ସମ୍ବଲପୁର) ଏହି ଖବର ସାଇକଲ ଯୋଗେ ଆମ୍ଭର କର୍ମୀମାନେ ନେଇ ପହୁଞ୍ଚାଇଲେ ଓ ତାଙ୍କୁ ସାଇକଲରେ ବସାଇ କୁଚିଣ୍ଡାକୁ ଆଣିଲେ (ସେତେବେଳେ ବସ ମଟର ବା ମଟର ସାଇକଲ ନ ଥିଲା ) ଦୟାନନ୍ଦଙ୍କ ପ୍ରେରଣାରେ ଆମ୍ଭର କର୍ମୀମାନେ ଏହି ଅନ୍ୟାୟ ଗିରଫଦାରି ଓ ମିଥ୍ୟା ମକଦ୍ଦମାର ପ୍ରତିବାଦ କରି ଗୋଟିଏ ଶୋଭଯାତ୍ରାରେ ବାହାରି ସରକାର ତଥା ପୁଲିସ ପ୍ରତି ବିକ୍ଷୋଭ ପ୍ରଦର୍ଶନ କରିଥିଲେ । ତା ୧୪ । ୧ । ୪୭ ମ: ରେ ଏହି ବିଷୟ ଉତ୍କଳ କଂ. କ. ଓ ସାରଙ୍ଗଧର ଦାସ କଟକଙ୍କୁ ଜଣାଇ ଦିଆ ଯାଇଥିଲା ।

ଦ୍ୱିତୀୟ ପଦକ୍ଷେପରେ ଶହେ ଜଣ ଖଣ୍ଡେ ସଶସ୍ତ୍ର ପୁଲିସ ବାହିନୀ ଓ ଜଣେ ୧ମ ଶ୍ରେଣୀ ମାଜିଷ୍ଟ୍ରେଟଙ୍କୁ ଉକ୍ତ ସଭା ବନ୍ଦ କରିବାକୁ ଦେବଗଡରୁ ଗୁବିନ୍ଦପୁର ପଠାଇଲେ । କର୍ମୀମାନେ ଗୁବିନ୍ଦପୁରର ପ୍ରକାଶ୍ୟ ସ୍ଥାନରେ ଉକ୍ତ ସଭା କରିବାକୁ ଉଦ୍ୟମ କରିବା ବେଳେ ଉକ୍ତ ମାଜିଷ୍ଟ୍ରେଟ ଉକ୍ତ ସଭାକୁ ଅନ୍ୟାୟ ଜମାୟତ (Unlawful Assembly ) ବୋଲି ଘୋଷଣା କଲେ । ଓ ବସ୍ତିରେ ୧୪୪ ଧାରା ଜାରି କଲେ । ପୁଲିସ ଫୌଜ ଗୁଳି କରି କର୍ମୀମାନଙ୍କୁ ଉଡାଇ ଦେବାର ଡମ୍ଫ ତୋଫାନ କଲେ । ସାଧାରଣ ଲୋକେ ସଭା ଛାଡ ପଳିଗଲେ । ପୋଖତ କର୍ମୀମାନେ ଘର ଭିତରେ ବସି ସଭା କଲେ ଓ ନିମ୍ନଲିଖିତ ସଭ୍ୟ ମାନଙ୍କୁ ନେଇ ଗୋଟିଏ ସ୍ଥାୟୀ "ବାମଣ୍ଡା ପ୍ରଜାମଣ୍ଡଳ କମିଟୀ" ଗଠନ କଲେ । ଦାଶରଥି ମିଶ୍ର ସଭାପତି; ରାଜିବ ଲୋଚନ ପଟେଲ - ଉପସଭାପତି, ରତ୍ନାକର ପଟେଲ - ସମ୍ପାଦକ, ହୃଷିକେଶ ପଟେଲ,-କୋଷାଧ୍ୟକ୍ଷ, ରାମଚନ୍ଦ୍ର ନାୟକ, ଦାଶରଥି ପଟେଲ, ରାଧାନାଥ ଶର୍ମା, ଦଶରଥ ନାୟକ ଓ ଉଦେଚନ୍ଦ୍ର ଚୌଧୁରୀ ସଭ୍ୟ ରହିଲେ ।

ଏହି କମିଟୀକୁ ଟ ୫୦/ ଙ୍କା ଫିସ ଦେଇ କଟକଠାରେ ରେଜିଷ୍ଟ୍ରୀ କରାଗଲା । (Affiliated to Akhil Bharat Garjat Council or Lokaparishad) ଏହାପରି ଅଣିଆ ମେମ୍ବର କରିଥିବା ପଇସାରୁ

ଦିଆଗଲା ଓ ଏହାର ବୃହଦାଂଶ ରାଧାନାଥ ଶର୍ମା ୫୦ । ଅଣିଆ ମେମ୍ବର କରି ସଂଗ୍ରହ କରି ପାଇଥିବା ପଇସାରୁ ଦିଆ ଯାଇଥିଲା ।

ତା ୧୫ । ୧ । ୪୭ ମ:ରେ ରାମଚନ୍ଦ୍ର ନାୟକ ମହୁଲପାଲିରେ ଗୋଟିଏ ପ୍ରଜାମଣ୍ଡଳ ସଭା ଆହ୍ୱାନ କରି ସେଠାକୁ ଯାଉଥିବା ବେଳେ ସାଦାପୋଷାକ-ଧାରୀ ପୁଲିସ ଓ କେତେକ ନ କଲି ପ୍ରଜାମଣ୍ଡଳ କର୍ମୀ ତାଙ୍କ ସହିତ ମିତ୍ରତା ସ୍ଥାପନ କଲେ ଓ ସେ ଧରିଥିବା ପ୍ରଜାମଣ୍ଡଳ ମେମ୍ବର ସଂଗ୍ରହ ବହି ଓ ଅନ୍ୟାନ୍ୟ କାଗଜ ପତ୍ର, ଖବର କାଗଜ ସବୁ ତାଙ୍କ ଠାରୁ ନେଇଗଲେ । କିନ୍ତୁ ମହୁଲପାଲିରେ ସଭା ହେଲା ଓ ବହୁ ସଂଖ୍ୟାରେ ଲୋକ ପ୍ରଜାମଣ୍ଡଳ ସଭ୍ୟଭୁକ୍ତ ହେବାକୁ ଆଗ୍ରହ କଲେ । ଉକ୍ତ ଦିନ ରାତିରେ ଗୁବିନ୍ଦପୁରରେ ପ୍ରଜାମଣ୍ଡଳର କାର୍ଯ୍ୟକାରୀ କମିଟୀ ବସି ବାମଣ୍ଡା ପୁଲିସର ଏହି ଧୋକାବାଜ କାର୍ଯ୍ୟକୁ ନିନ୍ଦାକରି ପ୍ରସ୍ତାବ ଗ୍ରହଣ କରଗଲା ଓ ତାର ନକଲ ତା ୧୬ । ୧ । ୪୭ ମ.ରେ ବାମଣ୍ଡାର ଦେଓ୍ୱାନ ଓ ପୁଲିସ ସୁପରିନଟେନ୍‌ଡେଣ୍ଟ, ସ.ଓ.ଅ. କୁଚିଣ୍ଡା, ସାରଙ୍ଗଧର ଦାସ ଓ ପ୍ରା. କଂ କମିଟୀ 'ସମାଜ' କଟକଙ୍କ ନିକଟକୁ ପଠାଗଲା ।

ଏହି ପଦକ୍ଷେପ ନେବାପରେ ପ୍ରଜାମଣ୍ଡଳ କର୍ମୀଙ୍କୁ କୌଣସି ପ୍ରକାରେ ଦବାଇ ଦେବାର ଉପାୟ ନ ପାଇବାରୁ ବାମଣ୍ଡା ଦରବାର ଗୋଟିଏ ନ କଲି ପ୍ରଜାମଣ୍ଡଳ ସୃଷ୍ଟି କଲେ । ଏହି ଦଳର ମୁଖ୍ୟ ହେଲେ ଦିବ୍ୟରାଜ ସିଂ କୁଚିଣ୍ଡା, ପୁରନ୍ଦର ମହାପାତ୍ର, କିରଣାସନ ଓ ହୃଷିକେଶ ମହାପାତ୍ର, ଲସା (କୁଚିଣ୍ଡାର ଏହି ତିନି ଜଣ ପିଟିସନ ରାଇଟର (ଅର୍ଜିନବୀସ) କାମ କରୁଥିଲେ । "ବାମଣ୍ଡାର ପ୍ରଜାମଣ୍ଡଳର, ଅନାବଶ୍ୟ କତା" ବୋଲି ଖଣ୍ଡେ ପ୍ରସ୍ତାବ ପତ୍ର ଦେବଗଡ ସରକାରୀ ଛାପା ଖାନାରେ ଛପାଇ ଗ୍ରାମେ ୨ ବିତରଣ କଲେ ଏବଂ ସେହି ଛାପାଖାନାରେ ରସିଦ ବହି ଛପାଇ ୫୦ ସଭ୍ୟ ଚାନ୍ଦା ନେଇ ସେହି ପ୍ରସ୍ତାବପତ୍ରରୁ ଖଣ୍ଡେ ଦେଉ ଥିଲେ । ଏହା! ପିଟିସନ ରାଇଟର ମାନଙ୍କ ପାଖରେ ଥାଏ । ଯେଉଁମାନେ ପିଟିସନ ଲେଖାଇବାକୁ ଆସୁଥିଲେ ସେମାନେ ସଭ୍ୟଭୁକ୍ତ ହେଉଥିଲେ-ଏକ ଅଣା ମାତ୍ର ସଭ୍ୟ ଚାନ୍ଦା ଦେବ ଓ ପ୍ରସ୍ତାବପତ୍ରରୁ ଖଣ୍ଡେ ପାଇ । ଏଥି ପ୍ରତି

ଗଡଜନୁଗ୍ରହିତ କେତେକ ସ୍ୱାର୍ଥୀ ବ୍ୟକ୍ତି ବ୍ୟତୀତ କେହି ଆକୃଷ୍ଟ ହେଲେ ନାହିଁ ଓ ଏହାକୁ ଜନ ସାଧାରଣ "ନକଲି ପ୍ରଜାମଣ୍ଡଳ ବୋଲି କହିଲେ" ।

ଏହାର ପ୍ରତିବାଦ କରି ଆମ୍ଭେ "ବାମଣ୍ଡା ପ୍ରଜାମଣ୍ଡଳ" ତରଫରୁ "ବାମଣ୍ଡାରେ ପ୍ରଜାମଣ୍ଡଳର ଆବଶ୍ୟକତା" ନାମକ ଖଣ୍ଡେ ଛୋଟ ବହି-ଛପାଇ ବିକ୍ରି କଲୁଁ । ତାହା ବହୁତ ସଂଖ୍ୟାରେ ବିକ୍ରି ହେଲା । ଉଭୟର ନକୁନା ସଂରକ୍ଷିତ ହୋଇଅଛି । ପାଠକଙ୍କର ଅବଗତି ନିମନ୍ତେ ଉଭୟ ପୁସ୍ତିକାର ଅବିକଳ ନକଲ ଦିଆଗଲା :—

× × ×

× × ×

ତା ୧୯ । ୧ । ୪୭ ମ.ରେ କୁଚିଣ୍ଡାରେ ଦୀନବନ୍ଧୁ ଚୌଧୁରୀ କେନାଡ଼ପାଙ୍କ ସଭାପତିତ୍ୱରେ ଗୋଟିଏ ବଡ ସଭା ବାମଣ୍ଡା ପ୍ରଜାମଣ୍ଡଳର ଆହ୍ୱାନ କ୍ରମେ ହୋଇଥିଲା । ଏହି ସଭା ସ.ଡ଼. ହେଡକ୍ୱାର୍ଟର ତଥା ପୁଲିସ ଇତ୍ୟାଦି ବଡ ଅଫିସରଙ୍କ ସାମନାରେ ହୋଇଥିବାରୁ ଓ ସଭାରେ ଗଡସରକାର ଓ ତାଙ୍କ କର୍ମଚାରୀ ମାନଙ୍କର ଅନ୍ୟାୟ କାର୍ଯ୍ୟ ସବୁ ଲୋକ ମାନଙ୍କୁ ଉଲଗ୍ନଭାବେ ବୁଝାଇବା ସତ୍ତ୍ୱେ ତାଙ୍କ ତରଫରୁ କୌଣସି ପ୍ରତିକ୍ରିୟା ପ୍ରକାଶ ନ ପାଇବାରୁ କୁଚିଣ୍ଡା ସ.ଡ. ବାସୀ ନିର୍ଭୟରେ ଚାରି ଅଣିଆ ସଭ୍ୟ ଭୁକ୍ତ ହେଲେ ଓ ସଭାସମିତି ମାନଙ୍କରେ ବହୁ ସଂଖ୍ୟାରେ ଯୋଗ-ଦେବାକୁ ଲାଗିଲେ ।

ଲେଖକର ଗ୍ରାମ ସାତକମାରେ ତା ୧ । ୨ । ୪୭ ମ.ରେ ଗୋଟିଏ ବିରାଟ ପ୍ରଜାମଣ୍ଡଳ ସଭା ହେଲା । ଏହା ପୂର୍ବଦିନ କୁଚିଣ୍ଡା ସାପ୍ତାହିକ ବଜାରରେ ଡେଙ୍ଗୁରା ପିଟି ଏହି ସଭା ବିଷୟରେ ପ୍ରଚାର ହୋଇଥିଲା । ଏଣୁ କୁଚିଣ୍ଡା ସ.ଡ. ର ଦୂର ଦୂରାନ୍ତ ଗ୍ରାମ ମାନଙ୍କୁ ମଧ୍ୟ ଲୋକେ ସଭା ଶୁଣିବାକୁ ଆସିଥିଲେ । ସଭାର ଆୟୋଜନ କରିଥିଲା ଲେଖକ, ଶ୍ରୀ ଦାଶରଥି ମିଶ୍ର ଉକ୍ତ ସଭାର ସଭାପତି ଆସନ ଗ୍ରହଣ କଲାପରେ ସଭାରେ ଉପସ୍ଥିତ ସ୍ତ୍ରୀ ଲୋକଙ୍କ ହୁଳହୁଳି ଓ ପୁରୁଷମାନଙ୍କର କରତାଳିରେ ସଭାସ୍ଥଳୀ ପ୍ରକମ୍ପିତ ହୋଇଥିଲା । ସଙ୍ଗେ ୨ ଫୁଲଚନ୍ଦନ ଓ ପୁଷ୍ପମାଳା ଦେଇ ସଭାପତିଙ୍କୁ ଅର୍ଚ୍ଚନା

କରିଥିଲେ ଶ୍ରୀମତୀ ସୁଲୋଚନା ପଟେଲ୍ ଓ ପୁରୁଷଙ୍କ ତ: ର ରୁ ମାଲ୍ୟାର୍ପଣ କରିଥିଲେ ଗ୍ରାମର ବିଶିଷ୍ଟ ଶିକ୍ଷକ ଶ୍ରୀ ବିଦ୍ୟାଧର ପଟେଲ୍ । ମଦନ ରଭ ପ୍ରାରମ୍ଭିକ ଜାତୀୟ ସଙ୍ଗୀତ ଗାନ କରିଥିଲେ । ସଭାର ଉଦ୍ଦେଶ୍ୟ ବୁଝାଇଲେ ଲେଖକ । ଗୌରୀଶଙ୍କର ମହାପାତ୍ର ଓ ରାମଚନ୍ଦ୍ର ନାୟକ ପ୍ରଜାମଣ୍ଡଳରେ ଯୋଗ ଦେଇ ପ୍ରଜାମାନେ ଏକତ୍ରିତ ହୋଇ ପ୍ରଜାଶକ୍ତି ବୃଦ୍ଧି କରିବାକୁ ବୁଝାଇଥିଲେ । ତା ପରେ ଶ୍ରୀ ଦାଶରଥି ମିଶ୍ର ସେହି ସମୟରେ ଦେଶର ପରିସ୍ଥିତ ମହାତ୍ମାଗାନ୍ଧଙ୍କ ଅହିଂସା ନୀତି ଓ ଏହି ପରିପ୍ରେକ୍ଷୀରେ ସରକାର କ'ଣ କରିବା ଉଚିତ ଓ ତାହା ନ କଲେ ପ୍ରଜାମାନେ ସଙ୍ଗଠିତ ହୋଇ ତାହା ସରକାରଙ୍କ ଠାରୁ ହାସଲ କରିବା ନିମନ୍ତେ ସମସ୍ତେ ଏକଜୁଟ ହେବାକୁ ବୁଝାଇଥିଲେ । ରାଜାଙ୍କ ପକ୍ଷର ଅନେକ ଲୋକ ପ୍ରତିବାଦ କରିବାକୁ ଆସିଥିଲେ । ସେମାନଙ୍କ ମଧ୍ୟରେ ମୁଖ୍ୟ ଥିଲେ (୧) ହୃଷିକେଶ ମହାପାତ୍ର ଲସା (୨) ଧରଣୀ ଧର ଗୌନ୍ତିଆ କୁଚିଣ୍ଡା (୩) ପୁରୁଷୋତ୍ତମ ଗୌନ୍ତିଆ ପାନପାଲି (୪)ବାସୁଦେବ ଶର୍ମା, କୁଚିଣ୍ଡା ୫) ଲମ୍ବୋଦର ନାୟକ ସାହାଜ ବାହାଳ । କରୁଣାକର ପ୍ରଧାନ A.S I. କୁଚିଣ୍ଡା ଥାନା ଆସିଥିଲେ ସଭରେ କିଏ କ'ଣ କହୁଛନ୍ତି ତାହା ଲେଖିନେବାକୁ ସେ ଏହି ସଭକୁ ରାଜ ବିଦ୍ରୋହାତ୍ମକ ବୋଲି ଥାନାରେ ଇତଲାଏ ଦେଲେ । କୁଚିଣ୍ଡା ଥାନା ଦାୟିତ୍ୱରେ ଥିବା ତତକାଳିନ ପୁଲିସ ସବଇନ୍‌ସପେକ୍ଟର ନେତ୍ରାନନ୍ଦ ପାଢ଼ି ଏ ବିଷୟ ସଙ୍ଗେ ୨ ଫୋନ ଯୋଗେ ବାମଣ୍ଡା ରାଜଦରବାରକୁ ଓ ପୁଲିସ ସୁପରିନଟେନ୍‌ଡେଣ୍ଟ ନିତ୍ୟାନନ୍ଦ ସାହୁ ଦେବଗଡଙ୍କୁ ଜଣାଇଲେ । ଦରବାରରେ ଏ ବିଷୟରେ ଆଲୋଚନା ହୋଇ ମକଦ୍ଦମା ଯେପରି ଲାଗୁହେବ ସେପରି ସଜାଇ ଷ୍ଟେସନ ଡାଇରୀ କରିବାକୁ ପୁ: ସୁ: ଙ୍କୁ ଆଦେଶ ହେଲା । ଏହା ସଜାଡ ଗିରଫ ଓ୍ୱାରେଣ୍ଟ ଜାରି କରିବାକୁ ଦି ୫ ନ ସମୟ କଟିଗଲା ପରେ ଶ୍ରୀ ଦାଶରଥି ମିଶ୍ର; ଶ୍ରୀ ରାମଚନ୍ଦ୍ର ନାୟକ ଓ ଗୌରୀଶଙ୍କର ମହାପାତ୍ରଙ୍କ ନାମରେ ଓ୍ୱାରେଣ୍ଟ ବାହାରିଲା । ତା ୬ । ୨ । ୪୭ ମ.ରେ ମହୁଲପାଲି ପ୍ରଗଣା ବଳଣ୍ଡା ଗ୍ରାମରେ ପ୍ରଜାମଣ୍ଡଳ ସଭ ହେବାର ପ୍ରସ୍ତାବ ହୋଇଥିଲା । ଉକ୍ତ ସଭକୁ ଯାଉଥିବା ବେଳେ ରାସ୍ତାରେ ଶ୍ରୀ ମିଶ୍ର ଓ ଶ୍ରୀ ନାୟକଙ୍କୁ ମହୁଲପାଲି ପୁଲିସ ସବଇନ୍‌ସ-ପେକ୍ଟର ବଳଦେବ ଶର୍ମା ଗିରଫ କଲେ । ଗୌରୀଶଙ୍କର ମହାପାତ୍ର

ଲେଖକ ସେତେବେଳେ ବାମଣ୍ଡା ଛାଡ ସମ୍ବଲପୁର ଇଲାକା ମଧ୍ୟକୁ ଚାଲି ଯାଇଥିଲେ । ଏ ରାଜିଦ୍ରୋହୀଙ୍କ ନାମରେ ଭାରତ ଦଣ୍ଡବିଧି ଆଇନର ୧୨୪ (କ) ଧାରା ଅନୁସାରେ ଓ୍ୱାରେଣ୍ଟ ଜାରି ହୋଇ ଥିଲା । ଦାଶରଥି ଓ ରାମଚନ୍ଦ୍ରଙ୍କ ମକଦ୍ଦମା ଏକ ସଙ୍ଗେ ବାମଣ୍ଡା ଜିଲ୍ଲା ମଜିଷ୍ଟ୍ରେଟ ପଦ୍ମନାଭ ପ୍ରଧାନଙ୍କ ଦେବଗଡ କୋର୍ଟରେ ବିଚାର ହେଲା । ଜାମିନ ମଞ୍ଜୁର ହେଲା ନାହିଁ । ସେତେବେଳେ ବାମଣ୍ଡା, ପାଲ୍ଲହଡା, ତାଳଚେର ଓ ରେଢାଖୋଲ ରାଜ୍ୟ ନିମନ୍ତେ A. N. Chakravarty ନାମକ ଜଣେ ସେସନ ଜଜ୍ ଥିଲେ । ତାଙ୍କ ଠାରେ ମଧ୍ୟ ଜାମିନ ନିମନ୍ତେ ଜେଲଖାନାରୁ ପ୍ରାର୍ଥନା କଲେ ତାହା ମଧ୍ୟ ନାମଞ୍ଜୁର ହେଲା । (ଜାମିନ ନାମଞ୍ଜୁର ନକଲ ନିମ୍ନରେ ଦିଆଗଲା) ସ.ଡ.ମା ଦେବଗଡଙ୍କ କୋର୍ଟରେ ମକଦ୍ଦମା ବିଚାର ହେଲା । ରାଜସାକ୍ଷୀ ହିସାବରେ ମୁଦାଲାମାନଙ୍କ ବିରୁଦ୍ଧରେ ଇଜାହାର ଦେଲେ ହୃଷିକେଶ ମହାପାତ୍ର ଲଇସା, ଧରଣୀଧର ଗୌନ୍ତିଆ କୁଚିଣ୍ଡା, ବାସୁଦେବ ଶର୍ମା କୁଚିଣ୍ଡା ଓ ପୁରୁଷୋତ୍ତମ ଗୌନ୍ତିଆ ପାନପାଲି । ମୁଦାଲାମାନଙ୍କ ସପକ୍ଷରେ ଓ ପ୍ରକୃତ ସତ୍ୟ ଘଟଣାର ଇଜହାର ଦେଲେ-ବୁଧରାୟ ଗୌନ୍ତିଆ, ବିଦ୍ୟାଧର ପଟେଲ ସାତକମା, ଗୋପାଳ ଚନ୍ଦ୍ର ଶର୍ମା ବୁଢୁପାଲି, ଦଶରଥ ନାୟକ ଓ ଚୈତନୀ ପଟେଲ ସାହାଜବାହାଲ । ବାମଣ୍ଡା ଦରବାର କଲିକତା ହାଇକୋର୍ଟର ଓକିଲ ଆଣି ମକଦ୍ଦମା ମୁଦାଲାମାନଙ୍କ ବିରୁଦ୍ଧରେ ଯେପରି ସାବ୍ୟସ୍ତ ହେବ ତାର ଚେଷ୍ଟାରେ ରହିଲେ -ସାକ୍ଷୀମାନଙ୍କୁ ତାଲିମ ଦେଲେ ଓ ମୁଦାଲା ପକ୍ଷ ସାକ୍ଷୀ ମାନଙ୍କୁ ୬/୮ ଘଣ୍ଟା ପର୍ଯ୍ୟନ୍ତ ଏପରିକି ୨ ଦିନ ପର୍ଯ୍ୟନ୍ତ ମଧ୍ୟ Cross exam. କଲେ ରାଜଦରବାରର ଇଚ୍ଛା ଯେତେବେଳେ - ମୁଦାଲାମାନେ ସଜାଏ ପାଆନ୍ତୁ । ସେତେବେଳେ ମକଦ୍ଦମା ବିଚାର ବାହାରକୁ ଦେଖାଇବା ପ୍ରହସନ ମାତ୍ର । ସେମାନଙ୍କୁ ଦୁଇବର୍ଷ ସଶ୍ରମ କାରାଦଣ୍ଡ ଭୋଗ କରିବାକୁ ତା ୧୬ ।୫ ।୧୯୪୭ ମ.ରେ ଆଦେଶ ହେଲା ରାୟରନକଲ ଦିଆଗଲା । ଦେବଗଡ ଜେଲ (ବାମଣ୍ଡା କେନ୍ଦ୍ର ଜେଲ) ରେ ସେ ଦୁହେଁ ଏହି ଦଣ୍ଡ ଭୋଗ କଲେ । ସେମାନେ କୋର୍ଟରୁ ରାୟ ନ କଲ ମାଗି ଜେଲଖାନ ଭିତରୁ ଅପିଲ କଲେ ରାୟଗଡ ହାଇକୋର୍ଟରେ ( ସେତେବେଳେ ବିହାର ୨ + ଓଡ଼ିଶା ୨୪ + ମଧ୍ୟପ୍ରଦେଶ ୧୦ ଏପରି ମୋଟ ୩୬ଟି ଗଡଜାତକୁ Eastern States

Agency ନାମ ଦେଇ ବ୍ରିଟିଶ ସରକାର ଏହି ରାଜ୍ୟମାନେ କିପରି ଶାସନ କରୁଛନ୍ତି ତାହା ଦେଖୁଥିଲେ ଜଣେ A. G. G. (Agent to the Governor General) ଏବଂ ତାଙ୍କର ହେଡକ୍ୱାର୍ଟର ଥିଲା ରାଞ୍ଚୀ (ବିହାର)ରେ । A. G. G. ଙ୍କ ତଳେ ଜଣେ ପୋଲିଟିକେଲ୍ ଏଜେଣ୍ଟ ରହୁଥିଲେ ଓଡ଼ିଶାର ୨୪ + ଓ ବିହାର ୨ ଗଡ଼ଜାତ କଥା ସେ ବୁଝୁଥିଲେ । ଏହି ଇଂରେଜ ଅଫିସରଙ୍କ ବୁଦ୍ଧି ବଳରେ ଭାରତର ସମସ୍ତ ଦେଶୀୟ ରାଜ୍ୟର ରାଜନ୍ୟ ମଣ୍ଡଳ "ଅଖିଳ ଭାରତ ଦେଶୀୟ ରାଜ୍ୟ ଲୋକ ପରିଷଦ" ନାମରେ ଗୋଟିଏ ସଂସ୍ଥା ଗଠନ କରିଥିଲେ ଓ ସେହି ସଂସ୍ଥାର ନିର୍ଦ୍ଦେଶ କ୍ରମେ ଉକ୍ତ ହାଇକୋର୍ଟ ଗଠିତ ହୋଇଥିଲା । )

ଏହି ସମୟରେ ଗୌରୀଶଙ୍କର ମହାପାତ୍ର ଓ ଲେଖକଙ୍କୁ କୁଚିଣ୍ଡା ପୁଲିସ ଖୋଜୁଥାନ୍ତି । ସେ ଦୁହେଁ କିନ୍ତୁ ବାମଣ୍ଡା ସୀମା ନିକଟବର୍ତ୍ତୀ ଲଇଡା, କିନାଲୋଇ, ଗୁଛାପାଲି, ଝୀଲପାଲ୍, ମାଳିଡିହ ପ୍ରଭୃତ ସମ୍ବଲପୁର ଜିଲ୍ଲାସ୍ଥ ଗ୍ରାମ ମାନଙ୍କରେ ରହୁଥିଲେ ଓ କଂଗ୍ରେସର କାର୍ଯ୍ୟ କରୁଥିଲେ । ସମୟ ୨"ରେ ବାମଣ୍ଡା ଭିତରକୁ ଆସି ପ୍ରଜାମଣ୍ଡଳ କାମ ମଧ୍ୟ କରୁଥିଲେ । ଏହି ସମୟରେ ଶ୍ରୀ ସାରଙ୍ଗ ଧର ଦାସ ଓ ଶ୍ରୀମତୀ ମାଳତୀ ଚୌଧୁରୀଙ୍କ ନେତୃତ୍ୱରେ ସୋନପୁର ବିରମହାରାଜପୁରସ୍ଥ କଳାପଥରଠାରେ ଓଡ଼ିଶା ଗଡ଼ଜାତ ଓ ପ୍ରଜାମଣ୍ଡଳ କର୍ମୀ ସମ୍ମିଳନୀ ହେଲା ଓ ସେଠାରେ ବାମଣ୍ଡା ପ୍ରଜାମଣ୍ଡଳ ତରଫରୁ ପ୍ରତିନିଧିତ୍ୱ କରି ବାମଣ୍ଡା ରାଜଦରବାରର ଦମନ ମୂଳକ ନୀତି ବିଷୟରେ କହିଥିଲେ, ଶ୍ରୀ ମହାପାତ୍ର ସେଠାରୁ ସେ ଆସି କୁଡାପଡା ମୌଜାର ଗୋଟିଏ ପ୍ରଜାମଣ୍ଡଳ ସଭା କରୁଥିବା ବେଳେ କୁଚିଣ୍ଡା ପୁଲିସ ତାଙ୍କୁ ଗିରଫଦଲେ । ଦୁଇହାତରେ ହାତକଡା ଓ ଅଣ୍ଟାରେ ରସିଭିଡ କୁଚିଣ୍ଡାକୁ ଚଲାଇ ୨ ଆଣିଲେ ଓ ତହୁଁ ଦେବଗଡ ପଠାଇଲେ, ତାଙ୍କର ମଧ୍ୟ ୧୨୪ (କ) ଧାରାନୁସାରେ ସେହି ପଦ୍ମନାଭ ପ୍ରଧାନ ଦେବଙ୍କ ସ.ଡ.ମା. ମାଜିଷ୍ଟ୍ରେଟଙ୍କ କୋର୍ଟରେ ବିଚାର ପ୍ରହସନ କରି ତାଙ୍କୁ ମଧ୍ୟ ୨ ବର୍ଷ ସଶ୍ରମ. କାରଦଣ୍ଡ ଆଦେଶ ହେଲା ଓ ସେ ମଧ୍ୟ ଦେବଗଡ ଜେଲରେ ଉକ୍ତ ଦଣ୍ଡ ଭୋଗକଲେ । ସେ ମଧ ଜେଲଖାନାରୁ ରାୟଗଡ ହାଇକୋର୍ଟରେ ଅପିଲ୍ କଲେ ।

ଘାତକମା ସଭ ଖୁବ ଶୃଙ୍ଖଳାର ସହିତ ଶେଷ ହୋଇଥିଲା । ଉପସ୍ଥିତ ଜନତା ପ୍ରଜାମଣ୍ଡଳ କର୍ମୀ ତଥା ରାଜସପକ୍ଷବାଦୀ ମାନଙ୍କ ମଧ୍ୟରେ ହୋଇଥିବା ବାଦ ପ୍ରତିବାଦ ଖୁବ ଉପଭୋଗ କଲେ । ମହାତ୍ମା ଗାନ୍ଧିକି ଜୟ, ଜବାହାରଲାଲ ନେହେରୁ କି ଜୟ, ଭରତ ମାତାକି ଜୟ, ଦାଶରଥି ମିଶ୍ର କି ଜୟ, ରାମଚନ୍ଦ୍ର ନାୟକ କି ଜୟରେ ଗ୍ରାମଟି ପ୍ରକମ୍ପିତ ହୋଇ ଉଠିଥିଲା । କର୍ମୀ ମାନେ ଗ୍ରାମର ବହୁତ ସ୍ତ୍ରୀ ପୁରୁଷଙ୍କୁ ପ୍ରଜାମଣ୍ଡଳ କର୍ମୀ ଭୁକ୍ତ କଲେ । ସଭା ଶେଷରେ ଲେଖକ ସଭପତି ଦାଶରଥି ମିଶ୍ରଙ୍କ ଫୁଲମାଳାକୁ ନିଲାମ ଡାକିଲେ । ଶେଷରେ ଟ ୬୦/ଙ୍କା (ଷାଠିଏ ଟଙ୍କା) ନିଲାମରେ ଚଡ଼ି ଗ୍ରାମସ୍ଥ ଶ୍ରୀ ନନ୍ଦଘୋଷ ସାଥୁଆ ଉକ୍ତ ମାଳାକୁ ନେଇ ଯାଉଟି ରଖିଲେ । ସେତେବେଳେ ଷାଠିଏ ଟଙ୍କାରେ ଏକ ତୋଳା ସୁନା ମିଳୁଥିଲା । ଉକ୍ତ ଟଙ୍କା ପ୍ରଜାମଣ୍ଡଳର ପାଣ୍ଠି ହେଲା ।

ରାଜଦରବାର ତରଫରୁ ପ୍ରଜାମଣ୍ଡଳ କର୍ମୀମାନଙ୍କ ଉପରେ ଧମକଚମକ ଲାଗି ରହିଥାଏ । ତା ୬ । ୨ । ୪୭ ମ:ରେ ସମ୍ପାଦକ ରତ୍ନାକର ପଟେଲଙ୍କ ଘର ଖାନତଲାସ ହେଲା । ଗୁବିନ୍ଦପୁର ପୁଲିସ ତାଙ୍କ ଘରେ ଗୋଟିଏ ଗୁପ୍ତି ରଖି ଦେଇ ତାହା ବରାମଦ କଲେ ଓ ବିନା ପାସରେ ମାରାତ୍ମକ ଅସ୍ତ୍ର ରଖିଥିବା ଦୋଷରେ ତାଙ୍କୁ ଦୋଷୀ କରି କୋର୍ଟ ଚାଲାଣ କଲେ ।

କହ୍ନିଆଲାଲ ଶ୍ରୀ ବାସ୍ତବ ଗୁବିନ୍ଦପୁର ଅଞ୍ଚଳରେ ଆଦିବାସୀମାନଙ୍କୁ ନିଶାପାନ ନ କରିବାକୁ ବୁଝାଉଥିବା ବେଳେ ତାଙ୍କୁ ମଦ ବୋତଲ ଭାଙ୍ଗିଥିବା ଅପରାଧରେ ଦୋଷୀ ସାବ୍ୟସ୍ତ କରିବାକୁ ମାଡାଲ୍‌ଙ୍କଠାରୁ ରିପୋର୍ଟ ନେଇ କୁଚିଣ୍ଡା କୋର୍ଟରେ ମକଦମା କରାଇ ଦେଲେ ।

ଏମାନଙ୍କୁ କିନ୍ତୁ ଜାମିନ୍ ମିଳିଲା । ହେଲେ ମଧ୍ୟ ମକଦମା କେବେ ବିଚାର ହୁଏ ନାହିଁ । ସପ୍ତାହକୁ ଥରେ ଲେଖାଏଁ କଚେରୀ ଆସୁଥାନ୍ତି । ଏହାଦ୍ୱାରା ଗୋଟିଏ ଦିଗରେ ପ୍ରଜାମଣ୍ଡଳ କାମରେ ବାଧା ହେଉଥାଏ । ଅନ୍ୟ ଦିଗରେ କୋର୍ଟକଚେରୀକୁ ଆସୁଥିବା ଲୋକଙ୍କ ସହ ମିଶିବାଦ୍ୱାରା ପ୍ରଚାର କାମ ମଧ୍ୟ ହେଉଥାଏ ।

ଦୀନବନ୍ଧୁ ଚୌଧୁରୀ ଓ ଲେଖକ ଗ୍ରାମେ ୨ ବୁଲି ଲୋକଙ୍କୁ ପ୍ରଜାମଣ୍ଡଳର ଅହିଂସା ନୀତି ବିଷୟରେ ବୁଝାଇଲୁଁ । ଏହି ଅହିଂସା ନୀତି ଅବଲମ୍ବନ ପୂର୍ବକ ମହାତ୍ମାଙ୍କ ପ୍ରଦର୍ଶିତ ନୀତିନିୟମ ଅନୁସାରେ ପ୍ରଜାମାନେ ଏକତ୍ରିତ ହୋଇ ପାରିଲେ ରାଜ୍ୟର ବେଠି, ବେଗାର, ରସଦ, ମାଗଣ, ବର୍ଦ୍ଧିତ ରାଜସ୍ୱ, ଅମାନୁଷିକ ତାଡ଼ନା ପ୍ରଭୃତି ନାନା ପ୍ରକାର ରାଜ ଅତ୍ୟାଚାରରୁ ଅବ୍ୟାହତି ପାଇ ପାରିବେ ବୋଲି ବୁଝାଇବାରୁ ଅନେକ ଲୋକ ଏହା ଦ୍ୱାରା ଆକୃଷ୍ଟ ହେଲେ ଓ ପ୍ରଜାମଣ୍ଡଳର ରସିଦ କାଟି ସଭ୍ୟଭୁକ୍ତ ହୋଇ ଆମ୍ଭର ସଂଗଠନକୁ ଦୃଢ଼ଭୂତ କଲେ ।

ଏହି ସମୟରେ ଦିନବନ୍ଧୁ ଚୌଧୁରୀଙ୍କ ଉପରେ ନିଜ ଗ୍ରାମ ଛାଡ଼ି ଅନ୍ୟ ଗ୍ରାମକୁ ଯାଇ ନ ପାରିବାକୁ (ଗୃହବନ୍ଦ) ୧୪୪ ଧାରା ଜାରି ହେଲା । ଏହା ଅମାନ୍ୟ କରିଥିଲେ ଗିରଫ ହୋଇ ଯାଇଥାଆନ୍ତୁ ଓ ସଂଗଠନ କାମ ହୋଇ ନ ଥାନ୍ତା । ଏଣୁ ଆମେ ଗିରଫ ନ ହୋଇ ଲୁଚି ରହି ଆମ୍ଭର ପ୍ରତିନିଧିଙ୍କ ଦ୍ୱାରା ଆମ୍ଭର କାମ ଚଲୁ ରଖିଲୁ । ହେଲେ ମଧ୍ୟ କିଛି ସମୟ ନିମନ୍ତେ ସଭା ସମିତି, ମେମ୍ବର ସଂଗ୍ରହ କାର୍ଯ୍ୟ ଧିମାଇ ଗଲା । ଏହା ଦୟାନନ୍ଦ ଶତପଥୀ ଜାଣିବାକୁ ପାଇଲେ । ଲଇଡା ତରଫରୁ ସାତକମା ଗ୍ରାମକୁ ଆସିଲେ ଓ ଗ୍ରାମସ୍ଥ ଧନେଶ୍ୱର ପଟେଲ (ପି: ଜଦୁନାଥ) ଙ୍କ ଘରେ ଗୁପ୍ତରେ ରହିଲେ । ଲେଖକ ଓ ସାତକମା ଗ୍ରାମର ପ୍ର. ମ. କର୍ମୀମାନେ ଯାଇ ତାଙ୍କ ସହ ସାକ୍ଷାତ କଲୁଁ । ସେହି ସମୟରେ କିପରି ଭାବରେ ଆନ୍ଦୋଳନ କରିବାକୁ ହେବ ସେ ବିଷୟରେ ସେ ବୁଝାଇ ତାଙ୍କ ନିର୍ଦ୍ଦେଶ ମତେ ଆମ୍ଭ କର୍ମୀମାନେ ଗ୍ରାମକୁ ଗ୍ରାମ ଯାଇ ଖୋଲା ସଭା ନ କରି ଘରୋଇ ବୈଠକମାନ କରି ମହାତ୍ମାଙ୍କ ଏକାଦଶ ବ୍ରତ ବିଷୟରେ ଆଲୋଚନା, ସେବାଦଳ ଗଠନ, ଗ୍ରାମ ସଫାଇ, ଗାଧୁଆ ଘାଟ ସଫାଇ, ପତାକା ଉତ୍ତୋଳନ କରି ଲୋକଙ୍କ ମଧ୍ୟରେ ଏକତା ଆଣିଲୁଁ । ଲୋକେ ମଧ୍ୟ ପ୍ର ମ କର୍ମୀଙ୍କ ଏପରି ନିଷ୍ଠା ଦେଖି ପ୍ରଜାମଣ୍ଡଳ ପ୍ରତି ଆକୃଷ୍ଟ ହେଲେ ଓ ବହୁ ସଂଖ୍ୟାରେ ପ୍ରଜାମଣ୍ଡଳର ରସିଦ କାଟି ସଭ୍ୟ ଭୁକ୍ତ ହେଲେ । ଏହି କ୍ରମ କରୁଁ ୨ ଚୌଧୁରୀଙ୍କ ୧୪୪ ଧାରା ମିଆଦ ଶେଷ ହୋଇଗଲା । ମିଆଦ ମଧ୍ୟରେ ମଧ୍ୟ ଆମ୍ଭେ କେବେ ୨ ଅନ୍ୟ ଗ୍ରାମକୁ ଯାଇ ମହାତ୍ମାଙ୍କ ରଚନାତ୍ମକ କାର୍ଯ୍ୟ ଓ

ଏକାଦଶ ବ୍ରତ ବିଷୟରେ ବୁଝାଇଲେ ପୁଲିସ ଆମ୍ଭ ପ୍ରତି ଆଉ ଅଶିଷ୍ଟ ବ୍ୟବହାର କଲେ ନାହିଁ । ଦେଖି ନ ଦେଖିଲା ପରି ରହିଲେ ।

ଏହି ପରିସ୍ଥିତିରେ ଆମ୍ଭେ ସଂଗଠନ କାର୍ଯ୍ୟ ନିମନ୍ତେ ବିଶେଷ ଧ୍ୟାନ ଦେଲୁଁ । କୁଚିଣ୍ଡା ସ ଡ଼.ର ପ୍ରତ୍ୟେକ ଥାନା, ଆଉଟ ପୋଷ୍ଟ ଓ ଅନେକ ବଡ଼ ୨ ଗ୍ରାମ ମାନଙ୍କରେ ଶାଖା ଓ ପ୍ରାଥମିକ ପ୍ର.ମ. କମିଟୀ ମାନ ଗଠନ କରିଦେଲୁଁ ଓ ସେ ସ୍ଥାନର କର୍ମକର୍ତ୍ତାଙ୍କ ଉପରେ ଦାୟିତ୍ୱ ଦେଇଦେଲୁଁ । ସେମାନେ ନିଜ ୨ ଅଞ୍ଚଳରେ ଆନ୍ଦୋଳନକୁ ତେଜାଇ ରଖିଲେ ଓ ରୁଚି ଅଣିଆ ସଭ୍ୟ ଭୁକ୍ତ କରିବାରେ ଲଗିଲେ ।

ଗୁବିନ୍ଦପୁର ଥାନାରେ ଆମ୍ଭର ହେଡ ଅଫିସ ଥିଲା କିନ୍ତୁ ଆନ୍ଦୋଳନର କେନ୍ଦ୍ରସ୍ଥଳ କୁଚିଣ୍ଡାରେ ଆମ୍ଭର ସଂଗଠନ ବା ଅଫିସ ନ ଥିଲା । ଏହି ଛୁଟିଆ ଟାଉନ ବା ବଡ ଗ୍ରାମର ମୁଖ୍ୟଲୋକେ ରାଜକର୍ମଚାରୀ ବା ରାଜଅନୁଗୃହିତ ଲୋକ ଏମାନେ ପ୍ରଜାମଣ୍ଡଳ କର୍ମୀଙ୍କୁ କେବଳ ସମାଲୋଚନା କରୁଥିଲେ । ଏମାନଙ୍କ ମତରେ ରାଜାହେଉଛନ୍ତି ଚଳନ୍ତି ବିଷ୍ଣୁ ମନୁଷ୍ୟ ରୂପେ ଅବତାର ଗ୍ରହଣ କରି ଅଛନ୍ତି ।" ( ... ... ... ... ... ... ... ... ... ଦେବତା ନର ରୂପେଣ ତିଷ୍ଠନ୍ତି ) ବିନା ରାଜାରେ କେବେ ରାଜ୍ୟ ଅଛି ନା ଚଳିବ " ଇତ୍ୟାଦି ।

ଆମ୍ଭର ବନ୍ଧୁବାନ୍ଧବ ସାଙ୍ଗ ସାଥୀ ମାନେ ମଧ୍ୟ ଆମ୍ଭଙ୍କୁ ଭଲ ଆଖିରେ ଦେଖି ପାରିଲେ ନାହିଁ । ସେମାନଙ୍କର ଘରକୁ ଯାଇ କଥାବାର୍ତ୍ତା କଲେ ମଧ୍ୟ ସେମାନେ ଆମ୍ଭଠାରୁ ଦୂରେଇ ରହିବାକୁ ପସନ୍ଦ କଲେ । ଏପରି ପରିସ୍ଥିତିରେ କୁଚିଣ୍ଡାରେ ଅଫିସ କରିବା ବଡ ସମସ୍ୟା ହେଲା । କୌଣସି ପ୍ରକାରେ ଆମ୍ଭେ କେତେଜଣ କର୍ମୀ ଶ୍ରୀଶ୍ରଦ୍ଧାକର ପଟେଲ କୁଚିଣ୍ଡାଙ୍କ ଘରେ ଗୋଟିଏ ପ୍ରଜାମଣ୍ଡଳକର୍ମୀଙ୍କ ଛୋଟ ବୈଠକ ବସିଲା । ସେହି ବୈଠକର ନିଷ୍ପତ୍ତି ମତେ ଦିନବନ୍ଧୁ ଚୌଧୁରୀ ହେଲେ କୁଚିଣ୍ଡା ସ. ଡ଼. ପ୍ରଜାମଣ୍ଡଳ କମିଟୀର ସଭାପତି, ଲେଖକ ହେଲେ ସଂପାଦକ ଓ ଶ୍ରଦ୍ଧାକର ହେଲେ କୋଷାଧ୍ୟକ୍ଷ । ତାଙ୍କ ଘରେ ଅଫିସ କାର୍ଯ୍ୟ ହେଲା । ଏହି ସମୟରେ କୁଚିଣ୍ଡା ସ.ଡରେ ଆମ୍ଭର ଯେଉଁ ସଂଗଠନ ମାନ କାର୍ଯ୍ୟ କରୁଥିଲେ ତାର କିଅତ ବିବରଣୀ ନିମ୍ନରେ ଦିଆଗଲା ।

୧- ଗଡପୋଷ :— ଲାଲ ପ୍ରତାପ ସିଂ ହାଜର ସିଂ ଗଡପୋଷ, ଚୈତନ୍ୟ ପଟେଲ ଦଳକି ବହାଲ ମିତ୍ରଭାନୁ ପଟେଲ ପିଣ୍ଡାପଥର ମାନଙ୍କ ନେତୃତ୍ୱରେ ଗୋଟିଏ ଶାଖା ପ୍ରଜାମଣ୍ଡଳ କମିଟୀ ଗଠିତ ହେଲା ।

୨- ରାଜିବ ଲୋଚନ ପଟେଲଙ୍କ ସଭାପତିତ୍ୱ, ଦୁର୍ଯ୍ୟୋଧନ ସେଇ, ପୂର୍ଣ୍ଣଚନ୍ଦ୍ର ପଟେଙ୍କ ନେତୃତ୍ୱରେ ମହୁଲ ପାଲି ଥାନା କମିଟୀ ଗଠିତ ହେଲା ଓ ତାର ଅଫିସ ଉଲୁଣ୍ଡା ଗ୍ରାମରେ ରହିଲା ।

୩- ପରମାନନ୍ଦ ପଟେଲ କୁସୁମୀ, ଭୁବନେଶ୍ୱର ଗୌନ୍ତିଆ କୁନ୍ତର, ପ୍ରଫୁଲ୍ଲ ଚନ୍ଦ୍ର ପଟେଲ କୁନ୍ତରଙ୍କ ନେତୃତ୍ୱରେ କୁସୁମୀଠାରେ ଗୋଟିଏ ଶାଖା କମିଟୀ ଗଠିତ ହେଲା ଏମାନେ ଦେବଗଡ ସ ଡ. ଲଇମୁରକୁ ଯାଇ ହିରାଧର ମହାନାୟକ ଲଇକୁରଙ୍କ ନେତୃତ୍ୱରେ ସେ ସ୍ଥାନର ଆଦିବାସୀ ମାନଙ୍କୁ ମଧ୍ୟ ରକ୍ଷିଅଣିଆ ସଭ୍ୟଭୁକ୍ତ କରି ଗୋଟିଏ ଦୃଢ ସଂଗଠନ ସ୍ଥାପନ କରି ପାରିଥିଲେ ।

୪- ଦାଶରଥି ପଟେଲ, ଛାଳ ରୈଧୁର, ମଦନ ପଟେଲ, ବିଶ୍ୱନାଥ କର, ଶରତ ଚନ୍ଦ୍ର ନାୟକ ପ୍ରଭୃତି ପ୍ରଜାମଣ୍ଡଳ କର୍ମୀ ବୃନ୍ଦ ପାରୁଆ ଲଡଠାରେ ଗୋଟିଏ ଦୃଢ ପ୍ରଜାମଣ୍ଡଳ କମିଟୀ ଗଠନ କରି ସେ ଅଞ୍ଚଳରେ ଖୁବ ତତ୍ପରତା ସହ ଜନସେବା ମୂଳ କାର୍ଯ୍ୟମାନ କରିବାକୁ ଲାଗିଲେ ।

୫- ଦଶରଥ ନାୟକ, ଶଶୀଭୂଷଣ ନାୟକ, ଚୈତନ୍ୟ ପଟେଲ ସାହାଜ ବାହାଲ ଓ ପରମାନନ୍ଦ ପୁରୋହିତ, ଭଗବାନ ନାୟକ ହଳଧର ଭର୍ମା ଖଣ୍ଡୋକଟାଙ୍କ ନେତୃତ୍ୱରେ ଖଣ୍ଡୋକଟା ସାହାଜବାହାଲ ଗ୍ରାମ୍ୟ ପ୍ରଜାମଣ୍ଡଳ କମିଟୀ ଗଠିତ ହୋଇ ସେମାନେ ମଧ୍ୟ ଜୋରସୋର ପ୍ରଜାମଣ୍ଡଳ କାର୍ଯ୍ୟରେ ଲାଗିଗଲେ ।

୬- କତରଜଳ ଜମିଦାରୀ ଇଲାକା - ଭବନେଶ୍ୱର ଜମିଦାର ୨ ୟ ଘଡା ହିସାବରେ ଅତ୍ୟାଚାର ଆରମ୍ଭ କରିଥିବା ହେତୁ ରମଣୀ ରଞ୍ଜନ ପଟେଲ ଗଙ୍ଗାରାମ ପଟେଲ ବନ୍ଧପାଲିଙ୍କ ନେତୃତ୍ୱରେ ଗୁଣ୍ଡୁରଚୁଆଁ ଦୈଘରୀ ପଟେଲ ପ୍ରମୁଖ କେତେକ ପ୍ରଜାମଣ୍ଡଳ କର୍ମୀଙ୍କ ସହ ଗୋଟିଏ ଶାଖା ପ୍ରଜାମଣ୍ଡଳ ଗଠନ କରି ସେ ତରଫର ପ୍ରଜାମାନଙ୍କୁ ଦୃଢ ଭାବରେ ସଂଗଠିତ କରି ପାରିଥିଲେ ।

୭- ଭରତ ଚନ୍ଦ୍ର ଚୌଧୁରୀ ଧୁଡପାଲି, ମନବୋଧ ପାଣିଗ୍ରାହୀ, ହାଡବନ୍ଧୁ ସଗଙ ମନାପାଲି, ବିମ୍ବାଧର ଗଉତ ବୃନ୍ଦାବନ ପଟେଲ, ଗୁଲବଦନ ପଟେଲ ଜେନାବ୍ରପା ପ୍ର.ମ. କର୍ମୀବୃନ୍ଦ ଦିନବନ୍ଧୁ ଚୌଧୁରୀଙ୍କ ଉଙ୍ଗିତରେ ମନାପାଲିଠାରେ ଗୋଟିଏ ଗ୍ରାମ୍ୟ ପ୍ରଜାମଣ୍ଡଳ କମିଟୀ ଗଠନ କରି ସେ ତରଫର ଲୋକମାନଙ୍କୁ ସଂଗଠିତ କଲେ ।

୮ ବାଣେଶ୍ୱର ମାଝୀ, କୃଷ୍ଣଚନ୍ଦ୍ର ପଟ୍ଟନାୟକ, କୁଳମଣି ପଟ୍ଟନାୟକ ନେତୃତ୍ୱରେ ଭମନକିଗ ଶାଖା କମିଟୀ ଗଠିତ ହେଲା ଓ ଏମାନେ ଦେବଗଡ ସ ଡ. କଂଗ୍ରେସ ପ୍ରଗଣା ପର୍ଯ୍ୟନ୍ତ ତାଙ୍କର ସଂଗଠନାତ୍ମକ କାର୍ଯ୍ୟ ବଢାଇ ପାରିଥିଲେ ।

୯- ଲକ୍ଷ୍ମଣ ପୂଝାରୀ, ବାଳମକୁନ୍ଦ ଗୟଙ୍କ ନେତୃତ୍ୱରେ ଗୌଡପାଲି ଥାନା ପ୍ରଜାମଣ୍ଡଳ କମିଟୀର ଅଫିସ କୁଲୁଣ୍ଡି ଗ୍ରାମରେ ଥିଲା । ଏମାନେ ସମ୍ବଲପୁର ସହିତ ସମ୍ବନ୍ଧ ସ୍ଥାପନ କରି ପାରୁଥିଲେ । ଏମାନେ ଦୟାନନ୍ଦ ଶତପଥୀଙ୍କ ନେତୃତ୍ୱରେ କମ୍ୟୁନିଷ୍ଟ ମତବାଦୀ ଥିଲେ ମଧ୍ୟ ପ୍ରଜାମଣ୍ଡଳକୁ ବିଶେଷ ଭାବେ ସମର୍ଥନ ଓ ସାହାଯ୍ୟ କରୁଥିଲେ ।

୧୦- ଭତପୁର ଅଞ୍ଚଳରେ ବୁଧଗୟ ଗୌନ୍ତିଆ, ଧରଣୀଧର ପଟେଲ ଓ ଲୋକନାଥ ଶର୍ମାଙ୍କ ନେତୃତ୍ୱରେ ଗୋଟିଏ ଶାଖା କମିଟୀ ଗଠିତ ହୋଇ ସେ ଅଞ୍ଚଳରେ ମଧ୍ୟ ପ୍ରଜା ଜାଗରଣ କାର୍ଯ୍ୟ ଚାଲିଥାଏ ।

ଦୟାନନ୍ଦ ଶତପଥୀ ଗ୍ରାମ ୨ କୁ ଗତିରେ ଯାଇ ପ୍ରଚାର ଓ ସଂଗଠନ କାର୍ଯ୍ୟରେ ଲୋକଙ୍କୁ ଉଦ୍‌ବୁଦ୍ଧ କରିବାକୁ ଲାଗିଲେ । ଅତିଶୟ ପରିଶ୍ରମ ହେତୁ ସେ ରୋଗଗ୍ରସ୍ତ ହୋଇ ରମତିଲାଇମାଳ ମୌଜା ବିଷ୍ଣୁଚରଣ ମଣ୍ଡଳଙ୍କ ଘରେ ପଡି ରହିଗଲେ । କୁଚିଣ୍ଡା ପୁଲିସ ବିଷ୍ଣୁଚରଣଙ୍କ ଘର ଜଗିରହିଲେ । ଡାକ୍ତର ଚୌଧୁରୀଙ୍କ ଆୟୁର୍ବେଦୀୟ ଚିକିତ୍ସା ଓ ବିଷ୍ଣୁଚରଣଙ୍କ ସେବା ଶୁଶ୍ରୂଷା ହେତୁ ପ୍ରାୟ ଏକ ମାସ ଉତ୍ତାରୁ ସେ ଆରୋଗ୍ୟ ଲାଭ କଲେ ଓ ବିଶ୍ରାମ ନିମନ୍ତେ ତାଙ୍କୁ ସମ୍ବଲପୁର ପଠାଇ ଦେଲୁ ।

ସଂଗଠନାତ୍ମକ କାର୍ଯ୍ୟ ଦିନବନ୍ଧୁ ଚୌଧୁରୀ ଓ ଲେଖକଙ୍କ ଯତ୍ନରେ ସୁରୁଖୁରୁରେ ପରିଚାଳିତ ହେଉଥିଲେ ମଧ୍ୟ ଖୋଲା ସାଧାରଣ ସଭା କରି ଭାଷଣ ଦେବା ପ୍ରବୃତ୍ତି ହେଉନଥିବାରୁ ଯୁବକର୍ମୀଙ୍କୁ ଏହା ଭଲ ଲାଗିଲା

ନାହିଁ । ପ୍ରଫୁଲ୍ଲ ପଟେଲ କୁନ୍ତଗ ନିଜ ଖର୍ଚ୍ଚରେ କଟକ ଗ୍ଭଲିଗଲେ । ସେଠାରେ ହରେକୃଷ୍ଣ ମହତାବ, ରାଧାନାଥ ରଥ, ଓ ସାରଙ୍ଗଧର ଦାସଙ୍କ ସହ ସାକ୍ଷାତ କରି ବାମଣ୍ଡାରେ ଘଟୁଥିବା ଉପରୋକ୍ତ ଖବର ସବୁ ବୟାନ କଲେ । ସେଠାରୁ ସାରଙ୍ଗଧର ଦାସ ଲକ୍ଷ୍ମଣ ଶତପଥୀଙ୍କୁ ବାମଣ୍ଡା ଯାଇ ଖୋଲା ସଭାକରି ଭାଷଣ ଦେଇ କର୍ମୀ ମାନଙ୍କୁ ଉଦ୍‌ବୁଦ୍ଧ କରିବା ନିମନ୍ତେ ଆଦେଶ ଦେଲେ । ଲକ୍ଷ୍ମଣ ବାବୁ ସମ୍ବଲପୁର ଆସି ଲଇକେରା ଥାନା ମାଳିତିହି ମୌଜାରୁ ସାହାଜବାହାଲି ଗ୍ରାମକୁ ଗତି ଆସି ରହିଲେ । ଏହି ବିଷୟ ଆମ୍ଭର ପ୍ରଜାମଣ୍ଡଳ କର୍ମୀମାନେ ରତାରତି ପ୍ରଚାର କଲେ ଯେ ଅନ୍ୟଦିନ ଅପରାହ୍ନ ୨ ଟାରେ ସଭାହେବ । ଆମ୍ଭର ପ୍ରଚାର ବିଷୟ ସାହାଜ ବାହାଲ ଗୌନ୍ତିଆ ସଙ୍ଗେ ୨ ଥାନାରେ ରିପୋର୍ଟ ଦେଲେ । ସର୍ବ ସାଧାରଣ ଓ ଆମ୍ଭର କର୍ମୀମାନେ ସଭାକୁ ନପହଞ୍ଚୁଣୁ ପୁଲିସ ଓ ଆମ୍ଭଙ୍କୁ ପ୍ରତିବାଦ କରିବା ରାଜଦଲାଲ ମାନେ ସେଠାରେ ଉପସ୍ଥିତ ହେଲେ । ଲେଖକର ସଭାପତିତ୍ୱରେ ସଭା କାର୍ଯ୍ୟ ଆରମ୍ଭ ହେଲା । ସେତେବେଳେ ସଭାରେ ଶୃଙ୍ଖଳା ରକ୍ଷା କରିବା ନିମନ୍ତେ ଆମ୍ଭର ପ୍ରଜାମଣ୍ଡଳ ସେବାଦଳ ମଧ୍ୟ ମହଜୁଦ୍ ଥିଲେ । ଶତପଥୀଙ୍କ ଭାଷଣ ଉତ୍ତାରେ ଯେଉଁମାନେ ପ୍ରତିବାଦ କରିବାକୁ ଆସିଥିଲେ ସେମାନଙ୍କୁ ସଭାରେ କହିବାକୁ ଆଦେଶ ଦିଆଗଲା । ସେମାନେ ଯାହା କହିଲେ ଉପସ୍ଥିତ ଜନତା ତାର ପ୍ରତିବାଦ କଲେ । ସେମାନେ ମୋଟେ କହିପାରିଲେ ନାହିଁ । ଶେଷରେ ସଭାପତିଙ୍କ ଭାଷଣ ମଧ୍ୟ ଶାନ୍ତିପୂର୍ଣ୍ଣ ଭାବେ ହେଲା । ଯେମାନେ ସଭାକୁ ଯାହା ଭଣ୍ଡୁର କରିବାକୁ ଆସିଥିଲେ, ସଭାର ସାଫଲ୍ୟତା ଦେଖି ଲଜ୍ଜିତ ହେଲେ । ସଭା ଶେଷରେ ଭାରତମାତା, ମହାତ୍ମା ଗାନ୍ଧି, ଜବାହାରଲାଲ ନେହେରୁ, ସୁବାଷ ବୋଷ ପ୍ରଭୃତି ନେତୃବର୍ଗଙ୍କ ଜୟଧ୍ୱନିରେ ଗଗନ ପବନ ପ୍ରକମ୍ପିତ ହେଲା । ତା ପରଦିନ ସେହି ଅପରାହ୍ନ ୨ ଟା ବେଳେ ମହୁଲପାଲି ଥାନା ଭଲୁଣ୍ଡା ମୌଜାରେ ପ୍ରଜାମଣ୍ଡଳ ସଭାହେବାର ଡଣାର ଦିଆଗଲା ଓ ଠିକ ସମୟରେ ରାଜିବ ଲୋଚନ ପଟେଲଙ୍କ ସଭାପତିତ୍ୱରେ ଲକ୍ଷ୍ମଣ ଶତପଥୀ ମୁଖ୍ୟ ବକ୍ତା ରୂପେ ଭାଷଣ ଦେଲେ । ଏହି ସଭାରେ ପ୍ରାୟ ୪/୫ ହଜାର ଲୋକ ଜମା ହୋଇଥିଲେ । ଭାଷଣ ମଧ୍ୟ ଓଜସ୍ୱିନୀ ଭାଷାରେ ହେଲା । ସଭାରେ ପ୍ରଜାମଣ୍ଡଳ ପ୍ରତି ଲୋକେ ବହୁତ ଆକୃଷ୍ଟ ହେଲେ । ସାହାଜ ବାହାଲ

ସବୁ ଅପେକ୍ଷା ଏହି ସଭରେ ଜନତାର ଉନ୍ମାଦନା ବୃଦ୍ଧି ପାଇଲା । ମହୁଲପାଲି ପୁଲିସ ସବ ଇନ୍‌ସପେକ୍ଟର ବଳଦେବ ଶର୍ମା କୁଚିଣ୍ଡା ସ.ଡ.ମା ପ୍ରଫୁଲ୍ଲ ଚନ୍ଦ୍ର ଦେବଙ୍କୁ ଅନୁରୋଧ କରି ଓ୍ୱାରେଣ୍ଟ କଟାଇ ଶ୍ରୀ ଶତପଥୀଙ୍କୁ ଗିରଫ କରିବାକୁ ଯିବାବେଳେ ଆମ୍ଭେ ଉକ୍ତ ଖବର ପାଇ ତାଙ୍କୁ ବାମଣ୍ଡା ସୀମା ପାର କରି ରତାରାତି ଝାରସୁଗୁଡା ପଠାଇ ଦେଲୁ ।

ଏହାପରେ ରାଜସରକାରଙ୍କର ସମସ୍ତ ରାଗଦ୍ୱେଶ ରାଜିବଙ୍କ ଉପରେ ଓ ଲେଖକଙ୍କ ଉପରେ ପଡ଼ିଲା । ରାଜିବଙ୍କ ପିତାଙ୍କ ସମୟରୁ ମହୁଲପାଲି ପ୍ରଗଣାରେ ତମନଗୁଡା ସେତେବେଳେ ଖୁବ ଛୋଟ ଜଙ୍ଗଲି ଗ୍ରାମର ଗୌନ୍ତିସନ୍ଧ ଥିଲା । କୌଣସି ଗୋଟିଏ ଆଳ କରି କୁଚିଣ୍ଡା ତହସିଲଦାର ତାଙ୍କ ନାମରେ ରିପୋର୍ଟ କଲେ ଓ ରାଜା ତାଙ୍କୁ ଉକ୍ତ ଗ୍ରାମର ଗୌନ୍ତିସନ୍ଧରୁ ଉଚ୍ଛେଦ କରି ତାଙ୍କ ଭୋଗରାଜମି ନିଲାମ କଲେ ଓ ନୂତନ ଗୌନ୍ତିଆ ନିଯୁକ୍ତ କଲେ ।

ସାତକମା ଗ୍ରାମରେ ଗୋଟିଏ କପଡା କିଣାବିକା ବିଷୟରେ ପକ୍ଷ ଓ ସାକ୍ଷୀଙ୍କୁ ପ୍ରବର୍ତ୍ତାଇ କୁଚିଣ୍ଡା ଥାନାରେ ଗୋଟିଏ ଇତଲାଏ କରାଇଦେଲେ - ସରକାରଙ୍କ ଇଙ୍ଗିତରେ ଲେଖକଙ୍କ ନାମରେ । ଲେଖକ ଓ ଗ୍ରାମର ଅନ୍ୟ ଦୁଇଜଣ ଭଦ୍ରବ୍ୟକ୍ତି ଗ୍ରାମସ୍ଥିତ ଜଣେ ଦୋକାନୀର ଦୋକାନକୁ ରାତ୍ରି ସମୟରେ ପଶି ଦୋକାନୀର ବୃଦ୍ଧାମାତା ଶୋଇଥିବା ବେଳେ ଚୋରି କରି ଆଣିଲେ ଏକ ଥାନ କପଡା ତା ୨୪ । ୪ । ୪୭ମ: ରାତ୍ରରେ । ତା ୩୦ । ୪ । ୪୭ ମ: ସନ୍ଧ୍ୟାବେଳେ ଆମ୍ଭଙ୍କୁ କୁଚିଣ୍ଡା ପୁଲିସ ଭାରତୀୟ ଦଣ୍ଡବିଧି ଆଇନର ୩୮୦ ଧାରା ମୁତାବକ ଗିରଫ କରି ନେଇ କୁଚିଣ୍ଡା ଥାନା ଭିତରେ ନିର୍ଯାତନା କଲେ । ( ଏ ସମ୍ବନ୍ଧୀୟ କୋର୍ଟର ନକଲ ଲେଖକଠାରେ ଅଛି )

ପୂର୍ଣ୍ଣଚନ୍ଦ୍ର ପଟେଲ ଉଲୁଣ୍ଡାଙ୍କୁ ମହୁଲପାଲି ୬.୨. ବଳଦେବ ଶର୍ମା ମହୁଲପାଲି ଥାନାକୁ ଡକାଇ ଆଣି ଥାନାରେ ଅଟକ କରି ରଖି ପ୍ରଜାମଣ୍ଡଳରେ ନମିଶିବାକୁ ଦିଅ ନ ପର୍ଯ୍ୟନ୍ତ ଧମକ ଚମକ ସହିତ ବୁଝାଇଲେ କିନ୍ତୁ ସେ ମାନିଲେ ନାହିଁ । ଏହିପରି ପ୍ରତ୍ୟେକ ଥାନା ଓ ଆଉଟପୋଷ୍ଟ ମାନଙ୍କରେ ପୁଲିସ ତାଙ୍କର ଧମକ ଚମକ ଓ ଦମନଲୀଳା ଚଳୁ ରଖିଥାନ୍ତି କିନ୍ତୁ ଆନ୍ଦୋଳନ କମିବା ପରିବର୍ତ୍ତେ ବଢିବାକୁ ଲାଗିଲା ।

ଏହା ପୂର୍ବରୁ ପ୍ରଜାମଣ୍ଡଳ ଆନ୍ଦୋଳନକୁ ଦବାଇ ଦେବା ନିମନ୍ତେ ପ୍ରତ୍ୟେକ ଗଡଜାତ ରାଜାମାନେ ତାଙ୍କର ପୁଲିସ ଫୌଜ ସଂଖ୍ୟା ବୃଦ୍ଧି କରି ଗୋଳାବାରୁଦ ବନ୍ଧୁକ, ମେସିନଗନ୍ ପ୍ରଭୃତି ଅସ୍ତ୍ରଶସ୍ତ୍ର ମହଜୁଦ କରି ରଖିଥିଲେ । ସେହିପରି ବାମଣ୍ଡା ରାଜଦରବାର ମଧ୍ୟ କେତେ ଗୁଡ଼ଏ ନେପାଳି ଗୁର୍ଖା ଫୌଜଙ୍କୁ ଆଣି ଦେବଗଡ କୋଲସାହିରେ କ୍ୟାମ୍ପ କରି ରଖିଥିଲେ । ସେମାନେ ଗ୍ରାମକୁ ଗ୍ରାମ ମାର୍ଚ୍ଚିଂ କରି ବୁଲୁଥିଲେ । ବୁଲୁଥିବା ବେଳେ ଗୋଟିଏ ଛୋଟ ୨ ଚକ ଲାଗିଥିବା ମେସିନଗନକୁ ମଧ୍ୟ ତାଙ୍କ ସହ ଟାଣି ୨ ନେଉଥିଲେ ଓ କୌଣସି ୨ ଠାରେ ସେଠାରୁ ଗୁଳି ଚଳାଇବା ମଧ୍ୟ ପ୍ରଦର୍ଶନ କରୁଥିଲେ । ଯେପରି ଲୋକେ ଭୟଭୀତ ହେବେ । ଏହି ପ୍ରଦର୍ଶନ ଦେବଗଡ ନିକଟବର୍ତ୍ତୀ ଗ୍ରାମମାନଙ୍କରେ ହେଉଥିଲା ।

କୁଚିଣ୍ଡା ସ.ଡ଼.ରେ ଖୋଲା ସଭା ହୋଇ ଲୋକଙ୍କୁ ପ୍ରଜାମଣ୍ଡଳର ଅହିଂସା କାର୍ଯ୍ୟକ୍ରମ ବିଷୟରେ ବୁଝାଯାଉଥିଲା । ଜୁନମାସ ବେଳକୁ ଜମନକିରା ପ୍ରଗଣା ଟିକିଲିପଡା ମୌଜାରେ ସର୍ବ ଶ୍ରୀ ବାଣେଶ୍ୱର ମାଝୀ, କୃଷ୍ଣଚନ୍ଦ୍ର ପଟ୍ଟନାୟକ, ଲକ୍ଷ୍ମଣ ପୂଜାରୀଙ୍କ ଯତ୍ନରେ ରତ୍ନାକର ପଟେଲଙ୍କ ସଭାପତିତ୍ୱରେ ଗୋଟିଏ ବଡ ପ୍ର. ମ. ସଭା ହେଲା । ଏହା ଆଦିବାସୀ ବହୁଳ ଅଞ୍ଚଳ ଅଟେ, ବିଶେଷ କରି କଂସର ତରଫରୁ ମଧ୍ୟ ବହୁତ ଆଦିବାସୀ ଲୋକ ଏହି ସଭାରେ ଯୋଗଦେଲେ । ଏହି ସଭାରେ ଅନ୍ୟମାନଙ୍କ ମଧ୍ୟରେ କୃଷ୍ଣଚନ୍ଦ୍ର ପଟ୍ଟନାୟକ ତାଙ୍କର ସ୍ୱଭାବ ସୁଲଭ ଆଦିବାସୀ ଭାଷାରେ ମହାତ୍ମାଗାନ୍ଧଙ୍କ ଅହିଂସା ନୀତି ଓ ଲୋକ ପ୍ରତିନିଧି ଶାସନ ବିଷୟରେ ଏପରି ବୁଝାଇଲେ ଯେ ପ୍ରଭାବଶାଳୀ ଆଦିବାସୀ ମୁଖିଆମାନେ ପ୍ରଜାମଣ୍ଡଳ ସଭ୍ୟ ଭୁକ୍ତ ହେଲେ ଓ ପ୍ରଜାମଣ୍ଡଳର କାର୍ଯ୍ୟ କରିବାକୁ ବାହାରି ପଡଲେ ।

ଏହା ପରେ ୨ କଂଶରରେ ଦୁର୍ଯ୍ୟୋଧନ କୁଅଁର, ରବିଚନ୍ଦ୍ର କୁଅଁର କଂଶର ଉଦେକର ପଟେଲ ରମେଶ୍ୱର ପଟେଲ, ତୀର୍ଥଭଞ୍ଜ ପାଲୁଣୀଗୁଡା ପ୍ରଭୃତିଙ୍କ ଯତ୍ନରେ ଗୋଟିଏ ବଡ ପ୍ରଜାମଣ୍ଡଳ ସଭା ହେଲା । ଏହି ସଭାରେ ବହୁ ସଂଖ୍ୟାରେ ଆଦିବାସୀ, ଅଳ୍ପ ସଂଖ୍ୟାରେ ହରିଜନ ଓ ଅତି ନ୍ୟୁନ ସଂଖ୍ୟକ ସବର୍ଣ୍ଣ ଯୋଗ ଦେଇଥିଲେ । ଏହି ସଭାରେ ସେ ଅଞ୍ଚଳର ବହୁତ ଆଦିବାସୀ ପ୍ରଜାମଣ୍ଡଳ ସଭ୍ୟଭୁକ୍ତ ହୋଇଗଲେ ଓ କଂଶର ପ୍ରଜାମଣ୍ଡଳ କମିଟୀ ଗଠିତ ହେଲା ।

ଏହି ଜୁନମାସ ଶେଷ ବେଳକୁ କୁସୁମୀ ଅଞ୍ଚଳର ପ୍ରଜାମଣ୍ଡଳ କର୍ମୀଙ୍କ ଉଦ୍ୟମରେ ଲଇମୁଣ୍ଡରେ ମଧ୍ୟ ଗୋଟିଏ ବଡ ପ୍ର. ମ. ସଭା ହେଲା । କଂଗ୍ରେସ ସଭା ଅନୁରୂପ ଏହି ସଭାରେ ସେ ଅଞ୍ଚଳର ବହୁତ ଆଦିବାସୀ ଓ ଅନ୍ୟ ହରିଜନ ଏବଂ ସବର୍ଣ୍ଣ ଲୋକ ଯୋଗ ଦେଲେ । ସେ ସ୍ଥାନର ମହାନାୟକ ହିରଧର ନାୟକ ସମେତ ଅନ୍ୟାନ୍ୟ ଆଦିବାସୀ ମୁଖ୍ୟମାନେ ପ୍ରଜାମଣ୍ଡଳ ସଭ୍ୟ ଭୁକ୍ତ ହେଲେ । ହିରଧରଙ୍କ ନେତୃତ୍ୱରେ ସେଠାରେ ମଧ୍ୟ ଗୋଟିଏ ପ୍ରଜାମଣ୍ଡଳ କମିଟୀ ଗଠନ କରାଗଲା ।

ଉପରୋକ୍ତ ତିନିଟା ସଭାରେ ଯେଉଁ ଆଦିବାସୀ କର୍ମୀମାନେ ବାହାରିଲେ ସ୍ୱଭାବତଃ ଏମାନେ କର୍ମଠ, ନିର୍ଭିକ, ଥରେ ଯାହା ବୁଝିଗଲେ ସେଥିରୁ ପଛଘୁଞ୍ଚା ଦେବେ ନାହିଁ । ଏମାନେ ତନ, ମନ, ନିର୍ବିଶେଷରେ ପ୍ରଜାମଣ୍ଡଳ ନେତାଙ୍କ ଆଦେଶ ପାଳନ କରିବାକୁ ତୟାର ହୋଇଗଲେ ।

ଅନ୍ୟାନ୍ୟ ଅଞ୍ଚଳରେ ମଧ୍ୟ ଛୋଟ ବଡ ପ୍ରଜାମଣ୍ଡଳ ସଭା ସବୁ ହେଉ ଥାଏ ଓ ନୂତନ ୨ ଆମ୍ଭର କର୍ମୀମାନେ ଉତ୍ସାହର ସହିତ ପ୍ରଜାଣ୍ଡଳର ପ୍ରଚାର ଓ ସଭ୍ୟ ସଂଗ୍ରହ କାର୍ଯ୍ୟ ଗ୍ରାମେ ୨ ହେବାକୁ ଲାଗିଲା ।

ଅଳ୍ପଦିନ ଉତ୍ତାରେ ଭାରତରୁ ବ୍ରିଟିଶ ସରକାର ଚାଲିଯିବେ ଓ ଭାରତ ସ୍ୱାଧନ ହୋଇଯିବ ଏକଥା ଏହି ସମୟରେ ସ୍ପଷ୍ଟରୁ ସ୍ପଷ୍ଟତର ହୋଇ ଜଣା ଯାଉଥିଲେ ମଧ୍ୟ ଦେଶୀୟ ରାଜାମାନେ ତାଙ୍କ ଛୋଟ ବଡ ରାଜ୍ୟରେ ଯାବତ ଚନ୍ଦ୍ରାର୍କ ରାଜତ୍ୱ କରିବାର ସ୍ୱପ୍ନ ଦେଖି ବିଭୋର ହୋଇ ଯାଉଥିଲେ - ବିଶେଷ କରି ବାମଣ୍ଡା ରଜା ଓ ତାଙ୍କର ପରିଷଦ ବର୍ଗ ଓ ନାନାଦି ପ୍ରଜାଦମନ ପନ୍ଥା ଅବଲମ୍ବନ କରୁଥିଲେ ।

ଅନ୍ୟ ପକ୍ଷେ ପ୍ରଜାମଣ୍ଡଳ ମାନେ ରାଜାମାନଙ୍କୁ ନାମ ମାତ୍ର ଗାଦିରେ ରଖି ଶାସନ ଭାର ଲୋକ ପ୍ରତିନିଧିଙ୍କ ହସ୍ତକୁ ଆଣିବାକୁ ଚିନ୍ତିତ । ଏହିପରି ଆନ୍ଦୋଳନ ଲାଗିଥିବା ବେଳେ ଜୁଲାଇ ମାସରେ ପ୍ରଜାମାନେ ନିଜ ୨ ଚାଷ କାର୍ଯ୍ୟରେ ବ୍ୟସ୍ତ ରହିଲେ । ଅଗଷ୍ଟ ମାସ ବେଳକୁ ତା ୧୫ । ୮ । ୪୭ ମ ରେ ଭାରତ ସ୍ୱାଧୀନ ହେବାର ସମ୍ବାଦ ଘରେ ୨ ଚହଲିଗଲା । କିନ୍ତୁ ରାଜ୍ୟବାସୀଙ୍କ ନିମନ୍ତେ ଏହି ସମ୍ବାଦର କୌଣସି ମାଦକତା ନ ଥିଲା । ଯେହେତୁ ମୋଗଲ ବନ୍ଦୀ ଏ ଗଡଜାତ ଦୁଇଟି ଭିନ୍ନ ୨ ଦେଶ ରୂପେ ଶାସିତ ହେଉଥିଲେ ଓ ଭିନ୍ନ ୨ ଶାସକ ମଧ୍ୟ ଥିଲେ ।

ତା ୧୫ । ୮ । ୪୭ ମ: ସ୍ୱାଧୀନତା ଦିବସରେ ତ୍ରିରଙ୍ଗ ପତାକା କୁଚିଣ୍ଡାରେ ଉତ୍ତୋଳନ କଲା ଏହି ଲେଖକ । ଜାହାକୁ ଜଣାଇ ନ ଥିଲେ ମଧ୍ୟ ଶହ ୨ ପ୍ରଜାମଣ୍ଡଳ କର୍ମୀ ଓ ସାଧାରଣ ଲୋକେ ସଭ ସ୍ଥଳରେ ଉପସ୍ଥିତ ହୋଇଗଲେ । ଏହି ଅକିଞ୍ଚନର ସଭପତିତ୍ୱରେ ଗୋଟିଏ ବିରାଟ ସ୍ୱାଧୀନତା ସଭ ହେଲା । କୁଚିଣ୍ଡା ପୁରୁଣା କଚେରୀ ସମ୍ମୁଖରେ । ଗଡ ଦଲାଲ ବାସୁଦେବ ଶର୍ମା ସଭପତି ଉକ୍ଷଣକୁ କମ୍ୟୁନିଷ୍ଟ ଭବାପନ୍ନ ବୋଲି ସମାଲୋଚନା କଲେ କିନ୍ତୁ ଉକ୍ତ ବକ୍ତା କେଉଁ ଗାନ୍ଧିବାଦୀ ବୋଲି ଉପସ୍ଥିତ ଜନତା ହସିଦେବାରୁ ସେ ଦବିଗଲେ । ସଭ ଶେଷ ହେଲା । ତ୍ରିରଙ୍ଗ ଝଣ୍ଡା କି ଜୟ, ଭରତ ମାତା କି ଜୟ, ଜହର ଲାଲ ନେହେରୁ କି ଜୟ, ସୁବାସ ବୋଷ କି ଜୟ ପ୍ରଭୃତି ସ୍ଲୋଗାନରେ କୁଚିଣ୍ଡା ଗ୍ରାମ ପ୍ରକମ୍ପିତ ହେଲା ।

## ସାର୍ବଭୌମ କ୍ଷମତା

ବ୍ରିଟିଶ ସରକାର ଭରତ ଛାଡ଼ି ଗ୍ଭଲିଯିବା ବେଳେ ଭରତକୁ ହିନ୍ଦୁସ୍ଥାନ ଓ ପାକିସ୍ଥାନ ନାମରେ କେବଳ ଦୁଇଭଗ କରିଗଲେ ନାହିଁ । ଭରତ ସାମ୍ରାଜ୍ୟରେ ରାଜତ୍ୱ କରୁଥିବା ତିଗିରିଆ ପରି ଅତି କ୍ଷୁଦ୍ର ଦେଶୀୟ ରାଜ୍ୟଠାରୁ ଆରମ୍ଭ କରି ସର୍ବ ବୃହତ ହାଇଦ୍ରାବାଦ (ଆନ୍ଧ୍ର) ଓ କାଶ୍ମୀର ପରି ୬୫୪ ଗୋଟି ଦେଶୀୟ ରାଜ୍ୟର ରାଜାମାନଙ୍କୁ ସାର୍ବଭୌମ କ୍ଷମତା ଅର୍ପଣ କରି ଭରତକୁ ୬୫୬ ଭଗରେ ବିଭକ୍ତ କରି ଗ୍ଭଲି ଗଲେ । ଏହି ପରିପ୍ରେକ୍ଷୀରେ ରାଜାମାନେ ସେମାନଙ୍କର ସାର୍ବଭୌମ କ୍ଷମତା ବଜାୟ ରଖିବାକୁ ଚେଷ୍ଟା କଲେ ଓ ଅନ୍ୟ ପକ୍ଷରେ ପ୍ରଜାମଣ୍ଡଳମାନେ ଲୋକ ପ୍ରତିନିଧି ଶାସନ ପ୍ରଚଳନ କରିବାକୁ ଦାବୀ କଲେ । ଆନ୍ଦୋଳନ ପ୍ରତ୍ୟେକ ଗଡଜାତରେ ହେବାକୁ ଲାଗିଲା । ଓଡ଼ିଶାରେ ମୟୁରଭଞ୍ଜ, ବଲାଙ୍ଗିର ଓ ନୟାଗଡ ରାଜ୍ୟର ରାଜାମାନେ ତାଙ୍କ ରାଜ୍ୟରେ ଲୋକ ପ୍ରତିନିଧି ଶାସନ ପ୍ରଚଳନ କରିଦେଲେ ।

ଆମ୍ଭେ ବାମଣ୍ଡାରେ ସେତେବେଳେ ଗ୍ରାମେ ୨ ତ୍ରିରଙ୍ଗା ଝଣ୍ଡା ଉତ୍ତୋଳନ କରି ନିମ୍ନ ମତେ ସେ ଗାନ ଦେଇ ମାର୍ଚ୍ଚିଂ କରିବା ଆରମ୍ଭ କରିଦେଲୁଁ— ତ୍ରିରଙ୍ଗା ଝଣ୍ଡା କି ଜୟ, ଭରତ ମାତା କି ଜୟ,

ମହାତ୍ମାଗାନ୍ଧି କି ଜୟ, ଜବାହାର ଲାଲ ନେହେରୁ କି ଜୟ, ସୁବାସ ବୋଷ କି ଜୟ, ଇନକ୍ଲାବ - ଜିନ୍ଦାବାଦ, ମହାତ୍ମାଗାନ୍ଧି ଜିନ୍ଦାବାଦ, ଜହର ଲାଲ ନେହେରୁ ଜିନ୍ଦାବାଦ, ସୁବାସ ବୋଷ ଜିନ୍ଦାବାଦ, ଏକ ଦୋ-ଲାଲଟୁପି ଫେକଦୋ ( ସେତେବେଳେ ପୁଲିସ କନଷ୍ଟେବଲ ମାନେ ଲାଲ ଟୁପି ବ୍ୟବହାର କରୁଥିଲେ । ଗଡଜାତ ମାନଙ୍କ କଥାରେ ଭୁଲ ନାହିଁ । ଗଡ-ଦଲାଲଙ୍କ ପ୍ରତି ସାବଧାନ ହୁଅ, ଇନ୍‌କ୍ଲାବ ଜିନ୍ଦାବାଦ ଲଢକେ ଲେଙ୍ଗେ ପ୍ରଜାରାଜ । ଗଗନ ପବନ ପ୍ରକମ୍ପିତ ହେଲା । ଏହାଦ୍ୱାରା ପ୍ରଜାମାନଙ୍କ ମନରୁ ଅହେତୁକ ଭୟ ଦୂରୀଭୂତ ହେଲା । ସେମାନେ ଉତ୍ତରୋତ୍ତର ସାହସୀ, ସ୍ପଷ୍ଟବାଦୀ ଓ ସଂଗଠିତ ହେବାକୁ ଲାଗିଲେ । ଅନ୍ୟ ପକ୍ଷେ ରାଜ ସାହି କିଂକର୍ତ୍ତବ୍ୟ ବିମୁଢ ହୋଇଗଲେ । ଏହିପରି ଭବେ ଲେଖକ ତାର ସହ କର୍ମୀ ଗଣଙ୍କ ସାହାଯ୍ୟ ଓ ସ୍ୱତଃ ସ୍ଫୁର୍ତ୍ତ ଉତ୍ସାହରେ କୁଚିଣ୍ଡା ସ.ଡ଼ ରେ ଜାଗରଣ ଉଦ୍ଦୀପିତ କରିରଖିଲା । ଜାଗରଣ କିପରି ଭବରେ ଉଜ୍ଜିବିତ ହୋଇ ରହିଲା ତାର କେତେକ ଦୃଷ୍ଟାନ୍ତ ନିମ୍ନରେ ଦିଆଗଲା ।

ସ୍ନ ୧୯୪୭ ମ:- ଅଗଷ୍ଟ ମାସ ତା ୧୫ ରିଖ ଅପରାହ୍ନ ୨ଟା ବେଳକୁ ଦେବଗଡ ଜେଲରେ ସଶ୍ରମ କାରାଦଣ୍ଡ ଭୋଗ କରୁଥିବା ବାମଣ୍ଡା ପ୍ରଜାମଣ୍ଡଳ ସଭାପତି ଶ୍ରୀ ଦାଶରଥି ମିଶ୍ରଙ୍କ ପିତା ଶ୍ରୀ ଅର୍ଜୁନ ମିଶ୍ରଙ୍କ ମୃତ୍ୟୁ ହୁଏ । ତା ୧୫ । ୮ । ୪୭ ମ: ଭରତ ସ୍ୱାଧୀନତା ହେବା ଦିନ । ଆମ୍ଭେ ସ୍ୱାଧୀନ ତ୍ରିରଙ୍ଗା ପତାକା କୁଚିଣ୍ଡାରେ ଉତ୍ତୋଳନ କରୁଥିବା ବେଳେ ରାମଝୋଲୀ ମୌଜାର ଦାଶରଥି ମିଶ୍ରଙ୍କ ଜ୍ୟେଷ୍ଠ ପୁତ୍ର ପୁତ୍ର ରମାକାନ୍ତ ମିଶ୍ରଙ୍କୁ ଏହି ଖବର ଦେବାକୁ ଜଣେ ଆସିଲେ । ରମାକାନ୍ତ ସଭସ୍ଥଳରୁ ଚାଲିଗଲେ ତାଙ୍କ ଅଜାଙ୍କ ଶବ ସତ୍କାର କରିବା ନିମନ୍ତେ । ଦୟାନନ୍ଦ ଶତପଥୀ ଏହା ଜାଣି ସମ୍ବଲପୁରରୁ କୁଚିଣ୍ଡାକୁ ଆସିଲେ ଓ ଶ୍ରୀ ମିଶ୍ରଙ୍କୁ ତାଙ୍କ ପିତାଙ୍କ ଶ୍ରାଦ୍ଧ ନିମନ୍ତେ ପେରୋଲରେ ଆଣିବାର ଚେଷ୍ଟା କଲେ । ବୁଦ୍ଧରାୟ ଗୌନ୍ତିଆ ଛାଉନ୍ତମାନଙ୍କ ସହ ସେ ଦେବଗଡ ଯାଇ ନିୟମ ମୁତାବକ ଜାମିନ୍ ନାମା ଇତ୍ୟାଦି ଲେଖି ଦାଶରଥି ବାବୁଙ୍କୁ ଆଣିଲେ । ବୁଧରାୟ ଜାମିନ୍ ହେଲେ । ଶ୍ରାଦ୍ଧ କାର୍ଯ୍ୟ ଶେଷ ହେଲା । ତା ୧ । ୯ । ୪୭ ମ.ରେ କୁଚିଣ୍ଡାରୁ ସେ ବସ ଯୋଗେ ଦେବଗଡ ଯିବାବେଳେ ବାମଣ୍ଡା ପ୍ରଜାମଣ୍ଡଳ

ସମ୍ପାଦକ ଶ୍ରୀ ରତ୍ନାକର ପଟେଲ ଶ୍ରୀ ଦୟାନନ୍ଦ ଶତପଥୀ ଓ ଆଉ କେତେକ ପ୍ରଜାମଣ୍ଡଳ କର୍ମୀଙ୍କ ସହ ଲେଖକ ତାଙ୍କୁ ସେଠାରେ ବିଦାୟ ଦେଲୁଁ । ସେତେବେଳେ ତାଙ୍କର ଦୃଢ଼ ମନୋବଳର ପରିପ୍ରକାଶ ମୋର ଲେଖାରେ ପ୍ରକାଶ ପାଇବା ସମ୍ଭବ ନୁହେଁ — ସେ ଆମ୍ଭମାନଙ୍କୁ ଧୈର୍ଯ୍ୟ ଓ ଆତ୍ମ ବିଶ୍ୱାସ ସହ ଆଗେଇ ଯିବାକୁ କହିଲେ ଓ ଆମ୍ଭମାନଙ୍କର ବିଜୟ ଅଳ୍ପଦିନ ଭିତରେ ସୁନିଶ୍ଚିତ ବୋଲି ଘୋଷଣା କଲେ— ଉତ୍ତେଜନା ରହିତ ଦୃଢ଼ ଓ ଗମ୍ଭୀର ସ୍ୱରରେ । କିନ୍ତୁ ଆମ୍ଭମାନଙ୍କ ପକ୍ଷେ ତାହା ଉତ୍ତେଜନା ଉଦ୍ଦୀପକ ହେଲା । ସେ ଯାହା କହିଲେ, "ଶ୍ରୀ ଦାଶରଥି ମିଶ୍ରଙ୍କ ବାଣୀ" ବୋଲି ଖଣ୍ଡେ ପ୍ରଚାର ପତ୍ର ଛପାଇ ଦେଲୁଁ ।

ଯେଉଁ ଦିନ ଶ୍ରୀ ଶତପଥୀଙ୍କ ସହ କଥା ହେଲା ଯେ ସେ ତା ୪ । ୯ ୪୭ ମ.ରେ ବମତିଲାଇମାଳକୁ ଆସିବେ । ସେ ଆସିଲେ । ଲେଖକ ତା ୫ । ୯ ରେ ତାଙ୍କ ସହ ସାକ୍ଷାତ କଲା । ତା ୬ । ୯ । ୪୭ ମ ରେ ବମତିଲାଇମାଳଠାରେ ଗୋଟିଏ ପ୍ରାଥମିକ ପ୍ରଜାମଣ୍ଡଳ କମିଟୀ ଗଠନ କଲୁଁ । ତା ୭ । ୯ । ୪୭ ମ. ସକାଳୁ ୨ ଶ୍ରୀ ଶତପଥୀଙ୍କ ଉପରେ ବାମଣ୍ଡା ଛାଡ ଚାଲିଯିବାକୁ ୧୪୪ ଧାରା ନୋଟିସ ଜାରି ହେଲା । ଖବର ଆଖ ପାଖ ଗ୍ରାମମାନଙ୍କରେ ପ୍ରଚାର ହୋଇଗଲା । ପ୍ରସ୍ତାବ ହେଲା କୁଚିଣ୍ଡାରେ ଏହି ୧୪୪ ଧାରାର ପ୍ରତିବାଦ କରି ଗୋଟିଏ ସଭା କରିବାକୁ (ସାଧାରଣତଃ ଆମ୍ଭର ସଭା ଗୁଡାକ ଅପରାହ୍ନ ୧ଟା ବା ୨ ଟା ଭିତରେ ଆରମ୍ଭ ହୋଇ ୪-୫ ଟା ମଧ୍ୟରେ ଶେଷ ହୁଏ ) । ଆମ୍ଭେ ପ୍ରାୟ ୧୦ ଟା ବେଳେ ବମତିଲାଇମାଳରୁ ବାହାରିଲୁଁ । ପଛୁଆର କିମ୍ବା ଥାଟ ଆଡମ୍ବର ଦେଖାଇବା ଆମ୍ଭର ଉଦ୍ଦେଶ୍ୟ ନୁହେଁ । କିନ୍ତୁ ଅର୍ଦ୍ଧାବାହାଳ, ନାଗଡହି, ଘଲୁବାହାଳ, ଲସରଟାଙ୍ଗର, ମହୁଲପାଲି, କୁଚଲପାଲି, ଟୁଛର, କଲେହିପାଲି, ଉଲୁଣ୍ଡା ପ୍ରଭୃତିର ଆମ୍ଭର ପ୍ରଜାମଣ୍ଡଳ କର୍ମୀ, ସାଧାରଣ ସଭ୍ୟ ଓ ସମର୍ଥକମାନେ ସ୍ଲୋଗାନ ସହ ଶତପଥୀଙ୍କ ପଛେ ପଛେ ଚାଲିଲେ । ପାରୁଆଉଡ ପହଞ୍ଚିବା ବେଳକୁ ବାଉରୀଗୁଡା, ଟାହାଡବାହାଲ, ଖଣ୍ଡୋକଟା, ପଣ୍ଡରିକଟା, ଢଟିଆପାଲି, ସିଙ୍ଗଲପଣି ପ୍ରଭୃତି ଗ୍ରାମମାନଙ୍କର କର୍ମୀ; ସଭ୍ୟ, ସମର୍ଥକ ଓ ଦର୍ଶକଙ୍କର ଗୋଟିଏ ଜନ ସମୁଦ୍ର କହିଲେ ଅତ୍ୟୁକ୍ତି ହେବନାହିଁ ।

ପାରୁଆଭଡରୁ ପଦ୍ମାପାଲି ପର୍ଯ୍ୟନ୍ତ ୦ ମାଇଲ ରାସ୍ତା ମଟର ସଡକ, ଗୋରୁ-ଗାଡ ସଡକ, ମଝି ଫାଙ୍କ ଜାଗା ପାଖ ପାଖ ସବୁଜ ଶସ୍ୟ ପୂର୍ଣ୍ଣ ଧାନ କ୍ଷେତର ହିଡମାନଙ୍କରେ ମଧ୍ୟ ଜନତା ଭରପୁର ହୋଇ କୁଚିଣ୍ଡା ଅଭିମୁଖେ ଚାଲିଲେ । ଆମ୍ଭ କର୍ମୀଙ୍କ ତତ୍ପରତା ହେତୁ ଜନତା ଶାନ୍ତପୂର୍ଣ୍ଣ ଭାବେ ସ୍ଲୋଗାନ ଦେଇ ଆଗେଇଲେ । ପଦ୍ମାପାଲି ଅତିକ୍ରମ କରି ଅଳ୍ପଦୂର ଆଗେଇବା ପରେ ଅନ୍ୟ ଦିଗରୁ ଗୋଟିଏ ଜିପ୍‌ରେ ବାମଣ୍ଡା ପୁଲିସ ସର୍କଲ ଇନ୍‌ସପେକ୍ଟର ଶଶୀଭୂଷଣ ମହାନ୍ତି ଆସି ଆମ୍ଭ ସମ୍ମୁଖରେ ଶତପଥୀଙ୍କୁ ଗିରଫ କଲେ । ଉପସ୍ଥିତ ଜନତାକୁ ଅହିଂସା ଓ ଶାନ୍ତପୂର୍ଣ୍ଣ ଭାବେ ନିଜ ନିଜ କର୍ତ୍ତବ୍ୟ କରିଯିବାକୁ ସେ କହିଦେଇ ସେ ଜିପ୍‌ରେ ବସିଲେ । (ଜିପ୍‌ଗାଡ ସେଠାରୁ ତାଙ୍କୁ ନେଇଗଲା କୁଚିଣ୍ଡା, ଜମନକିରା, ଗୌଡପାଲି ହୋଇ ସମ୍ବଲପୁର ନିକଟସ୍ଥ ଧେନୁପାଲି ଠାରେ ଉତାରି ଦେଲା ଓ ଜିପ୍‌ଟି ଦେବଗଡକୁ ଫେରିଆସିଲା ।) ଲେଖକର ନେତୃତ୍ୱରେ ଜନତା ସେହିପରି ଚାଲିଲେ ସଜଡା ହୋଇ କୁଚିଣ୍ଡାକୁ ସ୍ଲୋଗାନ ଦେଇ ଦେଇ S.D.O. ଘର ସାମନା କୁଚିଣ୍ଡା ପୁଲିସ ସାମନା ହୋଇ ତିନିକୋଣିଆ ଘର ସେଠାରୁ ପୁରୁଣା କଚେରୀ ସାମନା ପଡିଆରେ ସଭହେଲା । ସଭରେ ଶତପଥୀଙ୍କ ଉପରେ ହୋଇଥିବା ୧୪୪ ଓ ଅନ୍ୟାୟ ଗିରଫଦାରିର ତିବ୍ର ନିନ୍ଦାକରି ଗୋଟିଏ ପ୍ରସ୍ତାବ ଗ୍ରହଣ କରାଗଲା । ସନ୍ଧ୍ୟା ସମୟ ହୋଇ ଗଲା । କର୍ମୀ-ମାନେ ସ୍ଲୋଗାନ ଦେଇ ଦେଇ ନିଜ ନିଜ ଗ୍ରାମକୁ ଗଲେ ।

ତା ୫ । ୯ । ୪୭ ମଃ ଦିନ ତମାମ ଉପରୋକ୍ତ ସମ୍ବାଦ— 'ସମାଜ', 'କୃଷକ' 'ମୁକ୍ତିଯୁଦ୍ଧ', 'ଗଡଜାତ ତାର' ପ୍ରଭୃତି ପତ୍ରିକାକୁ, ରୁକିଦପୁର ଆମ୍ଭର ମୁଖ୍ୟ କାର୍ଯ୍ୟାଳୟକୁ ତଥା ଦିନବନ୍ଧୁ ଚୌଧୁରୀ, ପ୍ରଫୁଲ୍ଲଚନ୍ଦ୍ର ପଟେଲ ପ୍ରଭୃତି ଆମ୍ଭର ନେତୃସ୍ଥାନୀୟ କର୍ମୀମାନଙ୍କୁ ଜଣାଇଲି ।

ଦେବଗଡ ରାଜ ଦରବାରରେ ଜନେଣି ପଡିଲା— କି ଉପାୟରେ ଏପରି ଜନଶକ୍ତିକୁ ଆୟତ୍ତ କରିବାକୁ ହେବ । ତାଙ୍କର ମନ୍ତ୍ରୀ ପରିଷଦ ବୈଠକ ବସି ବସନ୍ତ କୁମାର ବହିଦାରଙ୍କୁ ଏହି ଜାଗରଣକୁ ଦବାଇ ଦେବା ନିମନ୍ତେ କୁଚିଣ୍ଡାକୁ ପଠାଇବା ସ୍ଥିର ହେଲା ।

ଭରତ ଦେଶୀୟ ରାଜ୍ୟ ପରିଷଦଙ୍କ ନିର୍ଦ୍ଦେଶରେ ଗଡଜାତ ମାନେ ଗୋଟିଏ ଗୋଟିଏ ମନ୍ତ୍ରୀମଣ୍ଡଳ ଗଠନ କରିଥିଲେ । ବାମଣ୍ଡାରେ ମଧ୍ୟ ନିମ୍ନଲିଖିତ କର୍ମଚାରୀଙ୍କୁ ନେଇ ଗୋଟିଏ ମନ୍ତ୍ରୀମଣ୍ଡଳ ନିମ୍ନମତେ ଗଠନ କରିଥିଲେ । ସେଥିରେ ଥିଲେ ଦେଓ୍ୱାନ [୧] ବସନ୍ତ କୁମାର କର Prime minister with finance, ରାଜାଙ୍କ ଭାଇ ପଟ୍ଟାୟତ P. G. Deb [୨] Home & Defence minister, [୩] ହରପ୍ରସାଦ ଦେବ - ପୁଲିସ ସୁପରିନ୍‌ଟେଣ୍ଡେଣ୍ଟରୁ ବିତାଡ଼ିତ ହୋଇ State Development Officer ହୋଇଥିବାରୁ ବର୍ତ୍ତମାନ ପରିସ୍ଥିତିରେ ହେଲେ Development minister, ଏହି H. P. Deb ଗଣତନ୍ତ୍ର ପାର୍ଟିକୁ ସ୍ୱ ୧୯୫୬ ମସିହା ନିର୍ବାଚନରେ ଦେବଗଡ଼ Joint Constituency ରୁ ଓଡ଼ିଶା ବିଧାନ ସଭାକୁ ନିର୍ବାଚିତ ହେଲେ ସ୍ୱ ୧୯୫୩ ମଃ ରେ ସେ ଇସ୍ତଫା ଦେଇ ରାଜ୍ୟ P.S.C. ମେମ୍ବର ହେଲେ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ମୁଖ୍ୟ ମନ୍ତ୍ରୀତ୍ୱ ସମୟରେ । [୪] ବସନ୍ତ କୁମାର ବହିଦାର Revenue minister, ଏ ହେଉଛନ୍ତି ସୁନ୍ଦରଗଡ ରାଜାଙ୍କର ଏକ ବିଶ୍ୱସ୍ତ କର୍ମଚାରୀ, ରାଶବିହାରୀ ବହିଦାରଙ୍କ ପୁତ୍ର— B.A., B.L. ପାସ କରି ସ୍ୱ ୧୯୨୮-୨୯ ମଃରେ ପ୍ରଥମ କରି କୁଚିଣ୍ଡାରେ ତହସିଲଦାର ହୋଇ ପରେ S.D.O. ହେଲେ ସ୍ୱ ୧୯୪୧ ମଃ ରେ ବାମଣ୍ଡାର ରେଭିନ୍ୟୁ ଅଫିସର ହୋଇ ତଦାରକି ବନ୍ଦୋବସ୍ତ କଲେ । ତାପରେ ଉପରୋକ୍ତ ମତେ ବାମଣ୍ଡା ପ୍ରଜାଙ୍କୁ ସ୍ୱାୟତ୍ତଶାସନ ଦେଇଥିବା ପ୍ରହସନରେ ମନ୍ତ୍ରୀ ହୋଇଥିଲେ ।

ତା ୮ । ୯ । ୪୭ ମଃ ଦିନ କୁଚିଣ୍ଡା ସ.ଡ. ଗୌନ୍ତିଆମାନଙ୍କୁ ବାମଣ୍ଡା ସରକାରଙ୍କ ପକ୍ଷରୁ ନୋଟିସ ହେଲା ଯେ, ସେମାନେ ତା ୯ । ୯ । ୪୭ ମଃ ଦିନ ୧୦ ଟା ବେଳେ କୁଚିଣ୍ଡା ରାଣୀଓ୍ୱାସ ଠାରେ ଉପସ୍ଥିତ ହେବେ । ଲେଖକର ପିତା ଜଣେ ଗୌନ୍ତିଆ । ସେ କୁଚିଣ୍ଡାକୁ ଆସିବା ବେଳେ ଲେଖକ ମଧ୍ୟ ତାଙ୍କ ପଛେ ପଛେ ଆସିଲା । ରାଣୀଓ୍ୱାସ ସାମନାରେ ଅନେକ ଗୌନ୍ତିଆ ଏକତ୍ରିତ ହୋଇଥାନ୍ତି । ଦିନବନ୍ଧୁ ଚୌଧୁରୀ ମଧ୍ୟ ସେଠାରେ ଉପସ୍ଥିତ । ଆମ୍ଭେ ଦୁହେଁ ଯାଇ ଗୋଟିଏ କୋଣରେ ବସିଲୁଁ । ହାକିମ ମିଜାଜ ଧାରି ବସନ୍ତ ବାବୁ ଆସି ସମସ୍ତଙ୍କ ସମ୍ମୁଖରେ ସଭପତି

ଆସନ ମଣ୍ଡିତ କଲେ । ସେ ଜଣେ ମୋଟାଲୋକ ତାଙ୍କର ସ୍ୱର ମଧ୍ୟ ସେହିପରି ମୋଟା— ସେ ଉଚ୍ଚ ସ୍ୱରରେ ଗୌନ୍ତିଆ ମାନଙ୍କୁ କହିଲେ— କୁଚିଣ୍ଡା ସ୍ଟେଟ୍‌ରେ ତୁମ୍ଭେମାନେ ଥାଉ ଥାଉ କାହିଁକି ଏପରି ଗଣ୍ଡଗୋଳ ହେଉଛି ? ଯେଉଁ ଗ୍ରାମରେ ରଜାଙ୍କୁ ନମାନିବା ରାଜଶାସନକୁ ନ ମାନିବା ନିମନ୍ତେ ସଭା ହେଉଅଛି ସେ ସଭା କରିବାକୁ ତୁମ୍ଭେ ବାରଣ କର । ତୁମ୍ଭର କଥା ଯେଉଁମାନେ ଶୁଣୁ ନାହାନ୍ତି ସେମାନଙ୍କୁ ଧରିଆଣି ପୁଲିସ ଜିମା ଦିଅ । ବିଶେଷ କରି ଯେଉଁ ଗୌନ୍ତିଆମାନଙ୍କ ଭାଇ, ପୁଅ, ପୁତୁରା-ମାନେ ପ୍ରଜାମଣ୍ଡଳରେ ଯୋଗଦେଇ ଲୋକମାନଙ୍କୁ ଶାସନ ବିରୁଦ୍ଧରେ ଉତ୍ତେଜିତ କରୁଅଛନ୍ତି ସେମାନଙ୍କୁ ଯଦି ଗୌନ୍ତିଆ ମାନେ ଅଟକ କରି ନ ନରଖନ୍ତି ତାହାହେଲେ ତାଙ୍କୁ ଗୌନ୍ତିରୁ ବେଦଖଲ କରଯିବ ଓ ଗଣ୍ଡଗୋଳ-କାରୀ ମାନଙ୍କୁ ଉପଯୁକ୍ତ ସଜାଏ ଦିଆଯିବ ଇତ୍ୟାଦି ଇତ୍ୟାଦି ।

ଏହି ସଭରେ ତାଙ୍କର ଅନୁମତି ନେଇ ଲେଖକ କହିଲା ଆଜ୍ଞା, ଆପଣ ଗୌନ୍ତିଆମାନଙ୍କୁ ଉପଦେଶ ଦିଅନ୍ତୁ ଯେ, ଗୌନ୍ତିଆମାନେ ତାଙ୍କର ପୁତ୍ର-ନାତି ଯେଉଁମାନେ ସଭସମିତିରେ ଯୋଗ ଦେଉଛନ୍ତି ସେମାନଙ୍କୁ ପଘାରେ ଘରେ ବାନ୍ଧିକରି ରଖନ୍ତୁ ନତୁବା କୋଠରୀ ଭିତରେ ଭର୍ତ୍ତିକରି ତାଲା ପକାଇ ରଖନ୍ତୁ । ବର୍ତ୍ତମାନ ଯୁବକମାନେ ବାପମାନଙ୍କ କଥା ଶୁଣୁ ନାହାନ୍ତି । ମହାତ୍ମା ଗାନ୍ଧୀ, ଜବାହରଲାଲ ନେହେରୁ ପ୍ରଭୃତିଙ୍କ କଥା ଶୁଣୁଛନ୍ତି ଓ ତାଙ୍କର ଇଙ୍ଗିତରେ କାର୍ଯ୍ୟ କରୁଛନ୍ତି । ଏହା ଶୁଣି ସେ ଘବରାଇ ଗଲେ । ତାଙ୍କର ଆଶା ନଥିଲା ଯେ କୁଚିଣ୍ଡାରେ ତାଙ୍କ ସମ୍ମୁଖରେ ଠିଆହୋଇ କିଏ ଜବାବ୍ ଦେବ । ତେଣୁ ସେ ମତେ କହିବାକୁ ମନାକଲେ । ମୁଁ ସେଠାରୁ ଚାଲି ଆସିଲି । ବାହାରେ ଥିବା ଗୋଟିଏ ଲିମ୍ବ ଗଛ ମୂଳରେ ଛିଡା ହୋଇ ଗୌନ୍ତିଆମାନଙ୍କୁ କହିଲି, ବସନ୍ତ ବହିଦାର ବଡପାଟି କରି ଯାହା କହୁଛନ୍ତି ସେ ଭିତରେ କୌଣସି ସାରକଥା ନାହିଁ କେବଳ ଫମ୍ପା ଆଓ୍ୱାଜ ମାତ୍ର । ତୁମ୍ଭର ଭୟଭିତ ହେବାର କୌଣସି କାରଣ ନାହିଁ । ତୁମ୍ଭେ ସେଠାରୁ ଚାଲିଆସ । ହିପରି ୩/୪ ଥର ଖୁବ୍ ପାଟି କରି କହିବାରୁ କେତେକ ଗୌନ୍ତିଆ ମୋ ପାଖକୁ ଆସି ଘେରି ପକାଇଲେ ଓ କହିଲେ "ବାବୁ ଆମେ ସବୁ ବୁଝୁଅଛୁଁ ତୁମ୍ଭେ ଆଉ କହ ନାହିଁ । ତୁମ୍ଭଙ୍କୁ ବର୍ତ୍ତମାନ ଗିରଫ କରି

ନେଇଯିବେ । ସମସ୍ତଙ୍କର ଆଶଙ୍କା ଥିଲା ଯେ ମତେ ଗିରଫ କରିବେ କିନ୍ତୁ କଲେ ନାହିଁ । ମୁଁ ସେଦିନ ଶିଙ୍କଲପୋଷି ବାଳମକୁନ୍ଦ, ଲଖୋପଡା ରତ୍ନାକର, ଢାଢପାଲି ବୃନ୍ଦାବନ ଇତ୍ୟାଦି ଗୌନ୍ତିଆମାନଙ୍କ ସହ ଆସି ଢାଢପାଲିରେ ଆସି ଗୋଟିଏ ଟାଣୁଆ ପ୍ରଜାମଣ୍ଡଳ କମିଟୀ ନିମ୍ନଲିଖିତ ମେମ୍ବର ମାନଙ୍କୁ ନେଇ ଗଠନ କଲି ଓ ସେଠାରେ ସତ୍ୟାଗ୍ରହ ଉଦ୍ୟାପନ କଲି । ଶ୍ରୀ ପଦ୍ମନ ନାୟକ - ସଭପତି, ଶ୍ରୀ ଦୁର୍ଗାଚରଣ ନାୟକ - ସଂପାଦକ, ଓ ଶ୍ରୀ ସୁରେଶ ଚନ୍ଦ୍ର ନାୟକ, ଶ୍ରୀ ଶ୍ରୁତିଧର ନାୟକ (ସମସ୍ତେ ଢାଢପାଲି) ଓ ଶ୍ରୀ ଜୟନାରାୟଣ ନାୟକ ଲଖୋପଡା ସଭ୍ୟ ।

ତା ୧୦ । ୯ । ୪୭ ମଃ ଉପରୋକ୍ତ ବିଷୟ ସବୁ ଖବର କାଗଜ-ମାନଙ୍କୁ ପଠାଗଲା ଓ ଆମ୍ଭ କର୍ମୀମାନଙ୍କ ଦ୍ୱାରା ନିକଟସ୍ଥ ଗ୍ରାମମାନଙ୍କରେ ପ୍ରଚାର ହୋଇଯିବାରୁ ଢାଢପାଲି ଗ୍ରାମରୁ କର୍ମୀମାନେ ମତେ ଖଣ୍ଡୋକଟା ମୌଜାକୁ ପାଛୋଟି ନେଲେ ଓ ସେଠାରେ ନାରାୟଣ ପଟେଲଙ୍କ ଘରେ ଗୋଟିଏ ପ୍ରଜାମଣ୍ଡଳ ସଭ ହେଲା ଓ ସେଠାରେ ମଧ୍ୟ ବାମଣ୍ଡା ଷ୍ଟେଟ ପ୍ରାଇମେରୀ ପ୍ରଜାମଣ୍ଡଳ କମିଟୀ ଗୋଟିଏ ଗଠିତ ହେଲା ।

ତା ୧୧ । ୯ । ୪୭ ମଃ ମୋର ନାମରେ ୩୮୦ ଧାରା ଅନୁସାରେ କପଡା ଚୋରୀ ମକଦମା ହୋଇଥିବାରୁ କୁଚିଣ୍ଡା ଏସ୍.ଡ.ଓ. କୋର୍ଟକୁ ଗଲି, ମକଦମା ତାରିଖ ହେଲା । ସେଠାରେ କେହି ଜଣେ ଆମ୍ଭର କର୍ମୀ ଦୟାନନ୍ଦ ଶତପଥୀଙ୍କୁ ଖଣ୍ଡେ ପତ୍ର ଦେଲା । ସେହି ପତ୍ର ପାଇ ମୁଁ କୁଚିଣ୍ଡାରୁ କେତେଜଣ କର୍ମୀଙ୍କ ସହ ଲଇଡା ଆସିଲି । ଲଇଡାରେ ନନ୍ଦରାମ ପଟେଲଙ୍କ ଘରେ ଦିନବନ୍ଧୁ ଚୌଧୁରୀ ଓ ବାମଣ୍ଡାର ଆଉ ୪/୭ ଜଣ କର୍ମୀଙ୍କୁ ଭେଟିଲି । ସେଠାରେ ଶତପଥୀଙ୍କ ପରାମର୍ଶରେ ଆମ୍ଭେ କେତେ-ଗୁଡଏ ପ୍ରସ୍ତାବ ଲେଖିଲୁ Demand of the Bamra Prajamandal) ସେଥି ମଧ୍ୟରେ ମୁଖ୍ୟ ପ୍ରସ୍ତାବଟି ଥିଲା— ୨୧ ବର୍ଷରୁ ଉର୍ଦ୍ଧ୍ୱ ଜନ-ସାଧାରଣଙ୍କ ଦ୍ୱାରା ନିର୍ବାଚିତ ସଭ୍ୟଙ୍କ ଦ୍ୱାରା ବାମଣ୍ଡାରେ ଲୋକ ପ୍ରତିନିଧି ଶାସନ ଶୀଘ୍ର ପ୍ରଚଳନ କରିବା ନିମନ୍ତେ ସେଠାରେ ମତେ ବାମଣ୍ଡା ଷ୍ଟେଟ ପ୍ରଜାମଣ୍ଡଳର ସଂପାଦକ କଲେ ଓ ମୋର ସ୍ୱାକ୍ଷରରେ ପ୍ରସ୍ତାବ ସବୁ ଲଇଡା ପୋ:ଅ:ରୁ ଡାକ ଯୋଗେ ତା ୧୨-୯-୪୭ ମଃ ଦିନ ବାମଣ୍ଡା ଦରବାରକୁ ପଠାଗଲା ।

ଅପରାହ୍ନରେ ଲଇଡାରୁ ଆସି ସନ୍ଧ୍ୟା ସମୟରେ ସାତକମାରେ ପହଞ୍ଚିଲୁଁ । ମୁଁ ଶତପଥୀଙ୍କୁ ମୋ ନିଜ ଘରକୁ ନଆଣି ଧନେଶ୍ୱର ପଟେଲ (ପିତା ଯଦୁନାଥ) ଙ୍କ ଘରେ ରଖିଲି । ରାତ୍ରି ଭୋଜନ ପରେ ପ୍ରାୟ ରାତ୍ରି ୯ ଟା ବେଳକୁ ଆମ୍ଭ ଗ୍ରାମର ମୁଖିଆ ମୁଖିଆ ଲୋକ ପ୍ରଜାମଣ୍ଡଳ କର୍ମୀ ଓ ସଭ୍ୟ – ଆଦିବାସୀ, ହରିଜନ । ଦାଡପାଲି ଓ ଖଣ୍ଡୋକଟାର B.S.P.P.C. ସଦସ୍ୟ ବୃନ୍ଦ ଆସି ଧନେଶ୍ୱର ପଟେଲଙ୍କ ବାହାର ଦାଣ୍ଡରେ ଆସି ଉପସ୍ଥିତ । ମାତ୍ର କେତେଜଣ ରାଜଦଲାଲଙ୍କୁ ବାଦଦେଇ ବାକି ସମସ୍ତେ ପ୍ରଜାମଣ୍ଡଳ ସପକ୍ଷବାଦୀଙ୍କୁ ଭିତରକୁ ଯିବାକୁ ଅନୁମତି ଦେଲି । ଧନେଶ୍ୱର ପଟେଲଙ୍କ ଘର ଭିତର ଅଗଣାରେ ରୁଦ୍ଧଦ୍ୱାର ସଭା ହେଲା । ଏହି ସଭାରେ ଶତପଥୀଙ୍କ ନିର୍ଦ୍ଦେଶ କ୍ରମେ ସାତକମା ଶାଖା ବାମଣ୍ଡା ଷ୍ଟେଟ ପ୍ରଜା ପରିଷଦ ଗଠନ କରାଗଲା । ଏହାର ସଭାପତି ହେଲେ ରାମେଶ୍ୱର ନାୟକ (ପିତା ବାଳକି) । ତାଙ୍କ ସଭାପତିତ୍ୱରେ ପୁଣି ବାମଣ୍ଡା ଷ୍ଟେଟ ପ୍ରଜାମଣ୍ଡଳର ବୈଠକ ସେଠାରେ ବସିଲା ଓ ସେହି ସଭାରେ ଆମ୍ଭେ ଲଇଡାରୁ ଯେଉଁ ସବୁ ପ୍ରସ୍ତାବ ପଠାଇଥିଲୁଁ ସେସବୁ ସର୍ବସମ୍ମତିକ୍ରମେ ସମର୍ଥିତ ହେଲା । ଦୟାନନ୍ଦ ବାବୁ ସେଠାରେ ଉପସ୍ଥିତ ଥିବା କର୍ମୀମାନଙ୍କୁ ବହୁତ ସଂଗଠନାତ୍ମକ ଉପଦେଶ ଦେଲେ ଓ ଶେଷରେ ଆମ୍ଭେମାନେ ତନମନଧନ ଦେଇ ପ୍ରଜାମଣ୍ଡଳ କାମକୁ ଆଗେଇ ନେବାର ଶପଥ ନେଲୁଁ । ରାତିସାରା ସଭାକାର୍ଯ୍ୟରେ କଟିଗଲା ।

ତା ୧୩ । ୯ । ୪୭ ମଃ ପୂର୍ବାହ୍ନ ପ୍ରାୟ ୯।୧୦ଟା ବେଳେ ଖଣ୍ଡୋକଟା ହଳଧର ଭର୍ମା ସଙ୍ଗେ ଶତପଥୀ ଅବାଟରେ କ୍ଷେତ ମଢ଼ୁରିଆଙ୍କ ପରି ଧାନ କ୍ଷେତ ଦେଇ ଖଣ୍ଡୋକଟା ଚାଲିଗଲେ । ଆମ୍ଭର ୭।୮ ଜଣ ବ୍ୟତିତ ଏହି କଥା ଅନ୍ୟ କାହାକୁ ଜଣାନାହିଁ । ଶତପଥୀଙ୍କୁ ଧରିବା ନିମନ୍ତେ ଆମ୍ଭ ସାତକମା ଗ୍ରାମକୁ ୭।୮ ଜଣ ପୁଲିସ କନ୍‌ଷ୍ଟେବଲ୍ ଓ ୭।୮ ଜଣ ଚୌକିଦାର ଆସି ସ୍ଥାନେ ସ୍ଥାନେ ଜଗି ରହିଲେ । ଆମେ ମଧ୍ୟ ସେଠାକୁ ନଯାଇ ଧନେଶ୍ୱର ପଟେଲ ଘରେ ଶୋଇଛନ୍ତି ରାତି ଅନ୍ୟତ୍ର ଯିବେ ବୋଲି ଗୁପ୍ତ ପ୍ରଚାର କରିଦେଲୁଁ । ଘଡିରେ କନ୍‌ଷ୍ଟେବଲ ଓ ଚୌକିଦାର ସଂଖ୍ୟା ବୃଦ୍ଧି ପାଇଲା - ଧନେଶ୍ୱର ଘରର ଚାରିଆଡେ ଯେଉଁ ରାସ୍ତାରେ ବାହାରିବାର

ସମ୍ଭାବନା ସେହି ରାସ୍ତାର ଗଛ ଉପରେ, ଗଛ ମୂଳରେ, ଛିଡ ତଳେ ସେମାନେ ଜଗିରହିଲେ ରାତିସାରା । ସେହି ସମୟରେ ଶତିପଥୀ ଖଣ୍ଡୋ-କଟାରେ ସଭାକରି ବାମଣ୍ଡା ଷ୍ଟେଟ ପ୍ରାଇମେରୀ ପ୍ରଜାମଣ୍ଡଳ ଗଠନ କରି ଲଢେଇ କରିବାର ପ୍ରସ୍ତାବ ସବୁ ସେଠାରେ ମଧ୍ୟ ଗଠନ କରି ଲଢେଇ କରିବାର ପ୍ରସ୍ତାବ-ସବୁ ସେଠାରେ ମଧ୍ୟ ଗ୍ରହଣ କରାଇନେଲେ ।

ତା ୧୪ । ୯ । ୪୭ ମଃ ଭୋର ସକାଳୁ କେଶବ ଚନ୍ଦ୍ର ନାୟକ (ଢାଡଡାଲି), ଏ ଏସ୍. ଆଇ. କୁଚିଣ୍ଡା ଶତପଥୀଙ୍କ ସନ୍ଧାନରେ ରାତି କଟାଇ ମୋରଠାରେ ସାକ୍ଷାତ ହେଲେ । ତାଙ୍କୁ ବନ୍ଧୁ ସତ୍କାର କରି ବିଦାୟ ଦେଲି । ସେ ଜାଣିବାକୁ ପାଇଲେ ଯେ ଶତପଥୀ ଧନେଶ୍ୱର ଦଦା ଘରେ ବା ମୋ ଘରେ ନାହାନ୍ତି କେଉଁଆଡେ ଉଭନ ହୋଇଯାଇଛନ୍ତି । ତହୁଁ ଆମ୍ଭ ଗ୍ରାମରୁ ପୁଲିସବାଲେ ବିଦାୟ ନେଇ ଅନ୍ୟତ୍ର ଅନୁସନ୍ଧାନ କଲେ । ମୁଁ କୁଚିଣ୍ଡା ଯାଇ ଏହାର ପ୍ରତିକ୍ରିୟା ଅନୁଭବ କରି ଆସିଲି ।

ତା ୧୭ । ୯ । ୪୭ ମଃ ସନ୍ଧ୍ୟାରେ ଆମ୍ଭ ଗ୍ରାମର ମଣ୍ଡୁଆ ତଳେ ଗୋଟିଏ ଭାଗବତ ହେଲା । ଏହି ଭାଗବତରେ ଆମ୍ଭ ଗ୍ରାମର ଗଣ୍ଡା, ଘାସି, ଚମାର, କିଷାଣ, ଗଣ୍ଡ, ଗଉଡ, ଧୋବା, ଖଡଗ, କେଉଁଟ, ସୁନାରୀ ପ୍ରତ୍ୟେକ ଜାତିର ଲୋକ ଏକାଠି ବସି ଭାଗବତ କଲୁଁ ଓ ଏକା ପଟିରେ ବସି ପ୍ରସାଦ (ଚୁଡା ଗୁଡ କଦଳୀ) ସେବନ କଲୁଁ । ଏହା ଏହି ଗ୍ରାମ ପକ୍ଷରେ କାହିଁକି ଏ ଅଞ୍ଚଳ ପକ୍ଷରେ ଗୋଟିଏ ଅଜଣା ଅଶୁଣା ଅଭୂତ ଘଟଣା ହେଲା । ଯେଉଁ ଜାତିର ଲୋକମାନେ ମଡା ଜୀବଜନ୍ତୁଙ୍କ ମାଂସ ଓ ମଦ ଖାଆନ୍ତି ସେମାନେ ସମସ୍ତେ ସେପରି ଅଭକ୍ଷ ଭକ୍ଷଣ ନ କରିବାକୁ ଶପଥ ନେଲେ ।

ତା ୧୮ । ୯ । ୪୭ ମଃ ଦିନ ରମଡିଲହମାଳ ମୌଜାରେ ଗୋଟିଏ ପ୍ରଜାମଣ୍ଡଳ ସଭା କଲୁଁ । ସେହି ସଭାରେ-ପୁଲିସ ଲୋକେ ଓ ଚୌକିଦାର-ମାନେ ବାଟରେ ଘାଟରେ ଜଗି ରହୁଥିବାରୁ ଗ୍ରାମର ଝିଅ ବୋହୁଙ୍କର ଯିବା ଆସିବାରେ ବାଧା ହେଉଥିବା ଓ ଯେଉଁ ଚୌକିଦାର କନ୍‌ଷ୍ଟେବଲମାନେ ରାତିରେ ଗଛ ଉପରେ ଓ ଅନ୍ୟାନ୍ୟ ପୋକଯୋକ ମଶାଥିବା ଅସ୍ୱାସ୍ଥ୍ୟକର

ସ୍ଥାନମାନଙ୍କରେ ଢଗି ରହୁଥିବାରୁ ତାଙ୍କର ମଧ୍ୟ ସ୍ୱାସ୍ଥ୍ୟହାନୀ ଘଟୁଥିବାର ସେମାନଙ୍କୁ ଏପରି କରିବା ନିମନ୍ତେ ଆଦେଶ ନଦେବାକୁ ପ୍ରସ୍ତାବ ଗ୍ରହଣ କରି ତାହା ବାମଣ୍ଡା ଦରବାର ଓ ପୁଲିସ ସୁପରିନ୍‌ଟେନ୍‌ଡେଣ୍ଟ ଙ୍କ ନିକଟକୁ ପଠାଇଲୁଁ । ରାତ୍ରରେ ପାରୁଆଭଡ଼ ମଦନ ପଟେଲଙ୍କ ଘରେ ସଭ ହେଲା ।

ତା ୧୯ । ୯ । ୪୭ ମଃ ରେ ହାଡ଼ପାଲିଠାରେ ଗୋଟିଏ ପ୍ରଜା-ମଣ୍ଡଳ ସଭ ହେଲା । ସେଠାରୁ ସ୍ଲୋଗାନ ଦେଇ ଦେଇ କିଣ୍ଡିର ଗ୍ରାମ ପରିକ୍ରମା ଶେଷ ହେଲା । ଏହା ଦେଖି କିଣ୍ଡିର ଗ୍ରାମର ଯୁବକମାନେ ମଧ୍ୟ ତାଙ୍କ ଗ୍ରାମରେ ମଧ୍ୟ ଗୋଟିଏ ସଭ କରିବାକୁ ପ୍ରସ୍ତାବ କଲେ ।

ତା ୨୧ । ୯ । ୪୭ ମଃ ଆମ୍ଭ ଗ୍ରାମ ଓ ଏ ଅଞ୍ଚଳର ନବାନ୍ନଭକ୍ଷଣ-ଶୁଭ ଓ ଆନନ୍ଦର ଦିନ । ନୂଆଖାଇ ସାରି ଆମ୍ଭର ପ୍ରଚଳିତ ପ୍ରଥା— ମାତା, ପିତା, ଜ୍ୟେଷ୍ଠ ଭ୍ରାତା, ଭଉଣୀ ଓ ଅନ୍ୟାନ୍ୟ ଗୁରୁଜନଙ୍କୁ କାହାକୁ ସାଷ୍ଟାଙ୍ଗ ଦଣ୍ଡବତ ଓ କାହାକୁ କାହାକୁ ହାତଯୋଡ଼ ଭକ୍ତିପୂର୍ଣ୍ଣ ନମସ୍କାର କରି ସାରିବା ପରେ ଲେଖକ ଖଣ୍ଡିଏ ତ୍ରିରଙ୍ଗି ଝଣ୍ଡା ଧରି ଗ୍ରାମ ଦାଣ୍ଡରେ ସ୍ଲୋଗାନ ଦେଲା— "ପ୍ରଜାମଣ୍ଡଳ କର୍ମୀ ଏକଜୁଟ ହୁଅ" ୨।୩ ଟା ସ୍ଲୋଗାନ ପରେ ସଙ୍ଗେ ସଙ୍ଗେ ପଡ଼ାର ୧୦।୧୫ ଜଣ ବାହାରି ପଡ଼ିଲେ— ଭରତମାତା କି ମହାତ୍ମା ଗାନ୍ଧି କି, ଜବାହରଲାଲ ନେହେରୁ କି, ସୁବାସ ବୋଷ କି ପ୍ରଭୃତି ନେତୃବର୍ଗଙ୍କ ଜୟ ଜୟ ଧ୍ୱନି ନିନାଦିତ ହେଲା । ଉତ୍ତରାଭିମୁଖରେ ଆମ୍ଭର ଥାଟ ଚଳିଲା— ଇନ୍‌କ୍ୟୁଲାବ - ଲଢେଙ୍ଗେ ଲେଁଗେ ପ୍ରଜାରାଜ - ଧ୍ୱନୀ ଦେଇ ଦେଇ ଗ୍ରାମମୁଣ୍ଡକୁ ପହଞ୍ଚିବା ବେଳକୁ ଅମ୍ଭର ସଂଖ୍ୟା ୧୦୦ ପର୍ଯ୍ୟନ୍ତ । ପଟେଲ ପଡ଼ା ହୋଇ ଚମାର ପଡ଼ାକୁ ପହଞ୍ଚିବା ବେଳେ ପ୍ରାୟ ୫୦୦ । ତହୁଁ ଚଳିଲୁ କୁଟୁରଚୁଆଁ । ସେଠାରେ ଆମ୍ଭର ସଂଖ୍ୟା ୭୦୦ । ସେଠାରୁ ଦୁଇ ଧାଡ଼ରେ ମାର୍ଚ୍ଚ କରି ପୁରୁଣାପାଣି ଗ୍ରାମ ପରିକ୍ରମା କରିବା ବେଳେ ଆମ୍ଭର ସଂଖ୍ୟା ହଜାରେ ପ୍ରାୟ । ତହୁଁ ଶୃଙ୍ଖଳିତ ଢଙ୍ଗରେ କୁଡାପଡ଼ାକୁ ଯାଇ ଗ୍ରାମ ପରିକ୍ରମା କଲୁଁ । ତହୁଁ କିରଣାପନ ପରିକ୍ରମା କଲାବେଳେ ପ୍ରାୟ ୨୦୦୦ ଲୋକଙ୍କର ଗୋଟିଏ ପଟୁଆର ବିଭିନ୍ନ ପ୍ରକାର ସ୍ଲୋଗାନ ଦେଇ ଚାଲିଥାଉଁ । ପୁନଶ୍ଚ କୁଟୁରଚୁଆଁ ସ୍କୁଲ ପଡ଼ଆକୁ ଆସି ସେଠାରେ ଗୋଟିଏ ସଭ କଲୁଁ । ଲଇଡାରୁ ବାମଣ୍ଡା ଗଡ ଦରବାରକୁ

ପଠାଇଥିବା ପ୍ରସ୍ତାବ ସବୁ ଏହି ସଭରେ ପୁନଶ୍ଚ ସମର୍ଥନ କରାଇ ନେଲି ଓ ଖୁବ୍ ଭଲଭାବେ ନିଶା ନିବାରଣ ସମ୍ବନ୍ଧେ ଲୋକଙ୍କୁ ବୁଝାଇଲୁଁ । ଆମ୍ଭର ଜୁଲୁସ ସେଠାରେ ଭାଙ୍ଗି ଦେଲୁଁ । ସନ୍ଧ୍ୟା ହେଲା, ଯେ ଯାହା ଘରକୁ ଗଲୁଁ ।

ଘରେ ପହଞ୍ଚିବା ମାତ୍ରେ ଭଲୁବାହାଳ ମୌଜାର ଦୁଇ ଜଣ ମୁଖ୍ୟ କିଷାନ ନେତା ଏହି ଅଧମ ଲେଖକଙ୍କୁ ଅପେକ୍ଷା କରି ବସିଛନ୍ତି । ସେମାନେ ତା ୨୪ । ୯ । ୪୭ ମଃ ରେ ତାଙ୍କ ଗ୍ରାମରେ ଗୋଟିଏ ପ୍ରଜାମଣ୍ଡଳ ସଭର ଯୋଗାଡ କରି ଉକ୍ତ ସଭରେ ଯୋଗଦେବାକୁ ମତେ ନିମନ୍ତ୍ରଣ କଲେ । ସାଦର ନିମନ୍ତ୍ରଣ ଗ୍ରହଣ କଲି ।

ଅନ୍ୟ ଦିନ ସକାଳୁ ଗାଧୁଆ ଓ ଜଳଖିଆ ଶେଷ କରି ଗ୍ରାମର ୪/୫ ଜଣ କର୍ମୀଙ୍କୁ ସଙ୍ଗରେ ଧରି ଚାଲିଲୁ ଭଲୁବାହାଳ ଗ୍ରାମ ଅଭିମୁଖେ; (ପ୍ରଜା-ମଣ୍ଡଳ କାର୍ଯ୍ୟରେ ଆମ୍ଭେ କେବେହେଲେ ସାଇକଲ ବ୍ୟବହାର କରୁ ନଥିଲୁ । କିଣ୍ଡିଗ ଗ୍ରାମ ମଝିରେ ସ୍ଲୋଗାନ ଦେଇ ଯିବାରୁ ହଠାତ୍ ୫/୭ ଜଣ ବାହାରି ପଡଲେ ଓ ଅନ୍ୟମାନେ ଗାଧୋଇ ଖାଇ ସଭ ସମୟରେ ଉପସ୍ଥିତ ହେବାର ପ୍ରତିଶ୍ରୁତି ଦେଲେ । ସେହିପରି ହାଡପାଲି, ଖଣ୍ଡୋକଟା ଓ ସାହାଡବାହାଳରୁ ମଧ୍ୟ ଆମ୍ଭ ସଙ୍ଗେ କେତେକ ଯୋଗ ଦେଲେ ଓ ଅନ୍ୟମାନେ ସଭ ସମୟରେ ଉପସ୍ଥିତ ହେବାକୁ କହିଲେ । ଲଖୋପଡା, ଯୁବାନୀ, ବଡମାଳ ପ୍ରଭୃତିରୁ ମଧ୍ୟ ଆମ୍ଭର କର୍ମୀମାନେ ଆସି ଯୋଗ ଦେଲେ । ବାଉରୀଗୋଡା ଜଗନ୍ନାଥ ମନ୍ଦିର ସାମନା ମଣ୍ଡୁଆତଳକୁ ପହଞ୍ଚିବା ବେଳେ ଆମ୍ଭର ସଂଖ୍ୟା ପ୍ରାୟ ୨୦୦ ହେବ । ଏଠାରେ ଖୁବ୍ ଜୋର ସ୍ଲୋଗାନ ହେଲା । ଏହି ଗ୍ରାମ ମୋର ଶ୍ୱଶୁର ଘରର ଗ୍ରାମ ଓ ଉକ୍ତ ଜଗନ୍ନାଥ ମନ୍ଦିର ମୋର ଶ୍ୱଶୁର ଘର ସାମନାରେ । ମୋର ଯେତେ ନିକଟ ସଂପର୍କୀୟ ବନ୍ଧୁମାନେ ସେତେବେଳେ ଘଡ ସପକ୍ଷ ବାଦୀ । ଅନ୍ୟ ପକ୍ଷେ ଆମ୍ଭେ ପାଣ, ଘାସି, ଚମାରଙ୍କ ସହ ମିଶି ଉଗବତ କରିଥିବାରୁ ଓ ଏକାସନରେ ବସି ଚୁଡାଚକଟା ପ୍ରସାଦ ଖାଇଥିବାରୁ ଆମ୍ଭ ପ୍ରତି ସେମାନଙ୍କର ଘୃଣା ଭାବ – ବିଶେଷ କରି ମୋ ପ୍ରତି । ଏଣୁ ସେମାନଙ୍କୁ ଲକ୍ଷ୍ୟ କରି ଅନ୍ୟାନ୍ୟ ସ୍ଲୋଗାନ ମଧ୍ୟରେ "ମନୁଷ୍ୟମାନେ ଦୁଇ ଜାତି— ସ୍ତ୍ରୀ ଓ ପୁରୁଷ", "ଉଡ ଦଲାଲଙ୍କୁ ଚିହ୍ନି ରଖ" । ଭୀରୁ ଲୋକର ଏ ଦୁନିଆଁରେ

ସ୍ଥାନ ନାହିଁ । ପଛୁଆ ଲୋକଙ୍କ ଏ ଦୁନିଆଁରେ ସ୍ଥାନ ନାହିଁ ପ୍ରଭୃତି ସ୍ଲୋଗାନ ଜୋରରେ ଚଳିଲା । ବୀର ଦର୍ପରେ ମାର୍ଚ୍ଚ୍‌ କରି ତେଲିପଡା ହୋଇ ଭଲୁବାହାଲରେ ପହଞ୍ଚିଗଲୁଁ ।

ଭଲୁବାହାଳ ମଣ୍ଡୁଆତଳେ ସଭ ହେବାର ସ୍ଥାନ ଠିକ୍ ହୋଇଥିଲା । ସଭସ୍ଥଳରେ ଆମ୍ରତୋରଣ ଦେଇଥିଲେ । ଆମ୍ଭେ ଯେଉଁ ରାସ୍ତାରେ ଗଲୁଁ ପ୍ରତ୍ୟେକ ଘର ସାମନାରେ ପୂର୍ଣ୍ଣ କୁମ୍ଭ ଆମ୍ର ପତ୍ର ଓ ନଡଆ ରଖି ଗ୍ରାମ-ବାସୀ ଆମ୍ଭଙ୍କୁ ସ୍ୱାଗତ କଲେ । ଆମ୍ଭମାନଙ୍କର ପ୍ରାୟ ୧୦୦୦ ଲୋକଙ୍କ ଲୋକଙ୍କ ମଧ୍ୟାହ୍ନ ଭୋଜନର ବନ୍ଦୋବସ୍ତ ହୋଇଥିଲା । ଭୋଜନ ପୂର୍ବରୁ କାର୍ଯ୍ୟକାରୀ କମିଟୀର ବୈଠକ ଅନ୍ତେ ସୁଶୃଙ୍ଖଳ ପଙ୍କ୍ତି ଭୋଜନ ହେଲା । ଭୋଜନାନ୍ତେ ସଭକାର୍ଯ୍ୟ ଆରମ୍ଭ ହେଲା । ସଭରେ ପ୍ରାୟ ୫।୬ ହଜାର ଲୋକ ଉପସ୍ଥିତ ଥିଲେ । ଉତ୍ତେଜନା ପୂର୍ଣ୍ଣ ଭାଷଣମାନ ହେଲା । ଗୌନ୍ତିଆ-ମାନଙ୍କୁ ଜଣାଇ ଦିଆଗଲା ଯେ ତା ୯ । ୯ । ୪୭ ମଃ ରେ ବାମଣ୍ଡା ରେଭିନ୍ୟୁ ମିନିଷ୍ଟର ବସନ୍ତ କୁମାର ଚହିଦାର ସେମାନଙ୍କୁ ଗୌନ୍ତିରୁ ବେଦଖଲ କରିବା ନିମନ୍ତେ ଯେଉଁ ଧମକ ଦେଇଥିଲେ ତାହାର କିଛି ମୂଲ୍ୟ ନାହିଁ । ଅସ୍ତ୍ରଶସ୍ତ୍ର ନ ଧରି ସଭ ଓ ଶୋଭଯାତ୍ରା କରି ଆମ୍ଭର ଅଭବ ଅସୁବିଧା ବିଷୟ ପ୍ରସ୍ତାବ ଆକାରରେ ଜଣାଇବା ଆମ୍ଭର ଅଧିକାର ଅଛି । ତାର ପରେ ଆମ୍ଭେ ଚିଠା କରିଥିବା ପ୍ରସ୍ତାବ ସହ ଲଇଡାର ଆମ୍ଭର ପ୍ରସ୍ତାବ ସବୁ ସଭରେ ଗ୍ରହଣ କରାଇ ନେଲୁଁ । ଖୁବ୍ ଉତ୍ତେଜନା ପୂର୍ଣ୍ଣ ବାୟୁମଣ୍ଡଳ ମଧ୍ୟରେ ସଭକାର୍ଯ୍ୟ ଆରମ୍ଭ ହୋଇ ଶାନ୍ତପୂର୍ଣ୍ଣ ବାତାବରଣରେ ଶେଷ ହେଲା ।

ତା ୨୬ । ୯ । ୪୭ ମଃ ଗଡଜାତୀ ମୁକ୍ତି ଦିବସ ପାଳନ ଉପଲକ୍ଷେ କୁଚିଣ୍ଡାରେ ଗୋଟିଏ ସଭ ହେଲା । ଏହି ସଭ "ସର୍ବ ଭରତୀୟ ପ୍ରଜା ସଂଗଠନ"ର ନିର୍ଦ୍ଦେଶ କ୍ରମେ ପ୍ରତ୍ୟେକ ଗଡଜାତ ପ୍ରଜାମଣ୍ଡଳଙ୍କ ଦ୍ୱାରା ପାଳିତ ହୋଇଥିଲା । ଆମ୍ଭର ଗୁଚିଦପୁର ଠାରେ ମଧ୍ୟ ଏପରି ଗୋଟିଏ ସଭା ସେଦିନ ହେଲା । ଏହି ସଭାର ଉଦ୍ଦେଶ୍ୟ ରଜାମାନେ ପ୍ରଜାମଣ୍ଡଳ ତଥା ଅନ୍ୟାନ୍ୟ ରାଜନୈତିକ କର୍ମୀମାନଙ୍କୁ ବିନାଦୋଷରେ ନାନାଦି ମିଥ୍ୟା ମକଦ୍ଦମା କରି ଜେଲ ଦେଇଥିଲେ ବା ଜେଲ ହାଜତରେ ରଖିଥିଲେ ସେମାନଙ୍କୁ ଛାଡ଼ଦେବା ନିମନ୍ତେ ଜନମତ ସୃଷ୍ଟି କରିବା । କୁଚିଣ୍ଡାରେ ଏହି

ସଭ ଲେଖକର ସଭପତିତ୍ୱରେ ହୋଇ ସେତେବେଳେ ଦେବଗଡ ଜେଲରେ ବନ୍ଦୀଥିବା ବାମଣ୍ଡା ପ୍ରଜାମଣ୍ଡଳର ସଭପତି ଶ୍ରୀ ରାମଚନ୍ଦ୍ର ନାୟକ ଶ୍ରୀ ଗୌରୀଶଙ୍କର ମହାପାତ୍ରଙ୍କୁ ମୁକ୍ତିଦେବା ନିମନ୍ତେ ପ୍ରସ୍ତାବ ଗ୍ରହଣ କରି ଦେବଗଡ ରାଜଦରବାରକୁ ପଠାଇଲୁଁ ।

ତା ୨୮ । ୯ । ୪୭ ମଃ କୁଡାପଡାର ରାମଚନ୍ଦ୍ର ଗୌନ୍ତିଆ ଜଣେ ରାଜ ସପକ୍ଷବାଦୀ । ସେ ଉକ୍ତ ଗ୍ରାମର ପ୍ରଜାମାନଙ୍କୁ ପ୍ରଜାମଣ୍ଡଳରେ ଯୋଗ ନ ଦେବାକୁ ବୁଝାଉଥିଲେ । ସେହି ଗ୍ରାମରେ ଆମ୍ଭ ପ୍ରଜାମଣ୍ଡଳ କର୍ମୀ ଭଗବତ ପଟେଲ, ଜୟରାମ ନାୟକ ଆସି ଲେଖକକୁ ଉକ୍ତ ଗ୍ରାମରେ ଗୋଟିଏ ପ୍ରଜାମଣ୍ଡଳ ସଭ କରିବାକୁ ଅନୁରୋଧ କଲେ । ମୁଁ ତାଙ୍କୁ ସେହି-ଦିନ ଅପରାହ୍ନ ୩୨ଣ୍ଟା ସୁଦ୍ଧା ସଭକଲେ ଯୋଗଦେବାର ପ୍ରତିଶ୍ରୁତି ଦେଲି । ସେତେବେଳେ ଆମ୍ଭର ସଂଗଠନ ଏପରି ଦୃଢଥିଲା ଯେ, ୩।୪ ଘଣ୍ଟା ମଧ୍ୟରେ ପ୍ରଚାର ହୋଇ ୩୨ଣ୍ଟା ବେଳକୁ ଉକ୍ତ ସଭରେ ପ୍ରାୟ ୩ ହଜାର ଲୋକ ଉପସ୍ଥିତ ହୋଇଗଲେ । ସ୍ଲୋଗାନ ସହ ଗ୍ରାମ ପରିକ୍ରମା ହେଲା । ଲେଖକର ସଭପତିତ୍ୱରେ ସଭକାର୍ଯ୍ୟ ଆରମ୍ଭ ହେଲା । ମୁଖ୍ୟ ବକ୍ତା ଥିଲେ ଶ୍ରୀ ଦିନବନ୍ଧୁ ଚୌଧୁରୀ । ଏହି ସଭରେ ଉଲୁବାହାଲ ସଭର ସମସ୍ତ ପ୍ରସ୍ତାବ ଦୋହରାଇ ଦିଆଗଲା ।

ତା ୨୯ । ୯ । ୪୭ ମଃ ପୂର୍ବ ନିର୍ଦ୍ଧାରିତ କାର୍ଯ୍ୟକ୍ରମାନୁଯାୟୀ ଦିନବନ୍ଧୁ ଚୌଧୁରୀଙ୍କ ସହ ବକ୍ସମା ଗଲୁଁ । ନିକ୍ଟିମାଲ ଜମିଦାର ଶ୍ରୀ ଜୟଦେବ ଠାକୁର ଓ ଜଗମୋହନ ଦେବ ଶୀରିଡ, ଦୁଇଜଣ ରାଜ ସପକ୍ଷବାଦୀ ନେତାଙ୍କ ସହିତ ପ୍ରଜାମଣ୍ଡଳ ବିଷୟରେ ଆଲୋଚନା ହେଲା । ସେ ଦୁହେଁ ପ୍ରଜା ସଂଗଠନରେ ଯୋଗଦେବାକୁ ବୁଝାଇଲୁଁ । ସର୍ବଶେଷରେ ସେମାନେ ଆମ୍ଭର ସହମତ ସ୍ୱୀକାର କଲେ ।

ତା ୩୦ । ୯ । ୪୭ ମଃ ଦିନ ଲେଖକର ୩୮୦ ଧାରା ମକଦ୍ଦମା, କହ୍ନିଆଲାଲ ମଦବୋତଲ ଭଙ୍ଗା ଓ ରତ୍ନାକର ପଟେଲଙ୍କ ଘରୁ ମରମତ ହୋଇଥିବା ମକଦ୍ଦମାମାନଙ୍କର ପେଷୀ କୁଚିଣ୍ଡା ଏସ୍ ଡ. ଏମ୍. କୋର୍ଟରେ ପେଷୀ ଥିବାରୁ ଆମ୍ଭେ କୋର୍ଟରେ ଉପସ୍ଥିତ ହେଲୁଁ ।

ତା ୧ । ୧୦ । ୪୭ ମଃ ରେ କୁଚୁମୀଠାରେ ଗୋଟିଏ ପ୍ରଜାମଣ୍ଡଳ ସଭ ହେଉଥିବାର ରିପୋର୍ଟ S.D.M.-cum-S.D.O. କୁଚିଣ୍ଡା ପାଇ ଆମ୍ଭେ ଯେପରି କୁଚୁମୀ ସଭରେ ଯୋଗ ଦେଇପାରିବୁ ନାହିଁ ତା ୧।୧୦ କୁ ଆମ୍ଭର ମକଦମା ସବୁ ପେଶୀ ରଖିଦେଲେ । କୁଚୁମୀରେ କିନ୍ତୁ ପରମାନନ୍ଦ ଗୌନ୍ତିଆ, ଶରତ ଚନ୍ଦ୍ର ପଟେଲ; ଭୁନେଶ୍ୱର ପଟେଲ, ପ୍ରଫୁଲ୍ଲ ଚନ୍ଦ୍ର ପଟେଲଙ୍କ ନେତୃତ୍ୱରେ ଗୋଟିଏ ବିରାଟ ପ୍ରଜାମଣ୍ଡଳ ସଭ ହେଲା ଯେଉଁ-ଥିରେ କି କୁଚୁମୀ ଓ ଲଇମୁରା ପ୍ରଗଣାଦ୍ୱୟର ବହୁତ ଆଦିବାସୀ, ହରିଜନ ଓ ସାଧାରଣ ବ୍ୟକ୍ତି ଯୋଗଦେଇ ବାମଣ୍ଡାରେ ଶୀଘ୍ର ପ୍ରଜାରାଜ ପ୍ରତିଷ୍ଠା କରିବା ନିମନ୍ତେ ବାମଣ୍ଡା ଗଡଦରବାରକୁ ଆହ୍ୱାନ ଦେଲେ ।

ତା ୨ । ୧୦ । ୧୯୪୭ ମଃ ଗାନ୍ଧି ଜୟନ୍ତୀ ଆମ୍ଭର ପ୍ରତ୍ୟେକ ଶାଖା ପ୍ରଜାମଣ୍ଡଳ କମିଟୀ ମାନଙ୍କରେ ପାଳନ କରିବାର ପ୍ରସ୍ତାବ କରିଥିଲୁଁ ଓ ସେଦିନ ପାଳନ ମଧ୍ୟ କଲୁଁ । କିନ୍ତୁ କୁଚିଣ୍ଡା ତରଫରୁ ଲେଖକ ସହିତ ଅନ୍ୟ କେତେଜଣ କର୍ମୀ ଗୁବିନ୍ଦପୁରକୁ ଯାଇ ଆମ୍ଭ ମୂଳ ହେଡ ଅଫିସ ପ୍ରାଙ୍ଗଣରେ ଝଣ୍ଡା ଉତ୍ତୋଳନ ପୂର୍ବକ ପାଳନ କଲୁଁ । ବର୍ଷା ହେଉଥିବା ସତ୍ତ୍ୱେ ଆମ୍ଭେ କର୍ମୀମାନେ ସଫଳତାର ସହ ସଭକାର୍ଯ୍ୟ ଶେଷ କଲୁଁ । ସେଦିନ ଅପରାହ୍ନ ବୈଠକରେ ଠିକ୍‌ହେଲା ଯେ, ଠିକ୍ ୨୪ ଘଣ୍ଟା ପରେ ତା ୩ । ୧୦ । ୪୭ ମଃ ଅପରାହ୍ନ ୨ ଟା ବେଳେ କେଶାଇବାହାଲ ଠାରେ ଗୋଟିଏ ପ୍ରଜାମଣ୍ଡଳ ସଭ କରି ସେଠାରେ ଗୋଟିଏ ପ୍ରାଥମିକ ପ୍ରଜାମଣ୍ଡଳ କମିଟୀ ସ୍ଥାପନ କରିବାକୁ । ସେତେବେଳର ଆମ୍ଭର ଶକ୍ତିଶାଳୀ ସଂଗଠନ ବଳରେ କେଶାଇବାହାଲକୁ କେନ୍ଦ୍ରକରି ଉତ୍ତର ପୂର୍ବ ଓ ଦକ୍ଷିଣ ଦିଗକୁ ପ୍ରାୟ ୧୫ ମାଇଲ ବ୍ୟାସାର୍ଦ୍ଧରେ ପ୍ରଚାର ହୋଇଗଲା ।

ତା ୩ । ୧୦ । ୪୭ ମଃ ୧୦ ଟା ସମୟରେ ଆମ୍ଭେ ପ୍ରାୟ ୧୫/୨୦ ଜଣ କର୍ମୀ ସମ୍ବଲପୁର ବିଶିଷ୍ଟ ଗାନ୍ଧିବାଦୀ କର୍ମୀ ଶ୍ରୀ ପ୍ରହଲାଦ ରାୟ ଲାଠଙ୍କ ଜ୍ୟେଷ୍ଠ ଭ୍ରାତା ଶ୍ରୀ ବୈଦ୍ୟନାଥ ଲାଠଙ୍କ ଟ୍ରକରେ ଗୁବିନ୍ଦପୁରରୁ କେଶାଇବାହାଲ ଅଭିମୁଖେ ବାହାରିଲୁଁ । ଟ୍ରକ୍‌ଟି ବେତଝରଣ ଜଙ୍ଗଲକୁ ଗଛ ଆଣିବା ନିମନ୍ତେ ଯାଉଥିଲା । ଶ୍ରୀ ବୈଦ୍ୟନାଥ ବାବୁଙ୍କ ପ୍ରଜାମଣ୍ଡଳ ପ୍ରତି ବିଶେଷ ସହାନୁଭୂତି ଥିଲା । ଏଣୁ ସେ ଉକ୍ତ ଟ୍ରକ୍‌ରେ ଆମ୍ଭଙ୍କୁ ଆଣିଲେ । ଟ୍ରକ୍‌ରେ

ଆସୁ ଆସୁ ଘାଧପଡାଠାରେ ଟ୍ରକ୍‌ର କିଛି ଯାନ୍ତ୍ରିକ ଗୋଳମାଳ ହେବାରୁ ଡ୍ରାଇଭର ତାହା ମରମତି କଲେ ଓ ଆମ୍ଭେ ସେଠାରୁ ପ୍ରାୟ ୫୦ ମିଟର ଦୂରସ୍ଥ ଗୋଟିଏ ମହୁଲ ଗଛ ମୂଳରେ ଛାଇରେ ବସିଲୁଁ । ଏହି ସମୟରେ ଦେବଗଡ-ଗୁବିଦପୁର ସର୍ଭିସ ବସ ସେହିସ୍ଥାନକୁ ପହଞ୍ଚିଲା ଓ ଟ୍ରକ୍‌ଟି ଠିଆ ହୋଇଥିବା ସ୍ଥାନରେ ଅଟକିଗଲା । ସେଇ ବସରୁ ଧୁବାଇଧର ନାୟକ ନାମକ କୁଚିଣ୍ଡା ନାଜିର ପିଅନ ଉତୁରି କୁଚିଣ୍ଡା ଏ.ଡ ମା ଙ୍କ ସିଲ ମୋହର ଥିବା ୧୪୪ ଧାର ନୋଟିସ ନିମ୍ନଲିଖିତ କର୍ମୀଙ୍କ ସହ ଲେଖକ ଉପରେ ଉପରେ ମଧ୍ୟ ଜାରିକଲା । [୧] ରତ୍ନାକର ପଟେଲ [୨] ଭବାନୀ ଚରଣ ପାଲ [୩] ଦୀନବନ୍ଧୁ ଚୌଧୁରୀ [୪] ପ୍ରଫୁଲ୍ଲ ଚନ୍ଦ୍ର ପଟେଲ [୫] ଧରଣୀଧର ଗୌନ୍ତିଆ (ନାୟକ) [୬] ଶରତ ଚନ୍ଦ୍ର ନାୟକ [୭] ଦୁର୍ଗା-ଚରଣ ନାୟକ । ସେଥିରେ ଆମ୍ଭଙ୍କୁ କମ୍ୟୁନିଷ୍ଟ ଆଖ୍ୟା ଦିଆଯାଇଥିଲା ଏବଂ କୁଚିଣ୍ଡା ସ.ଡ. ମଧ୍ୟରେ ସଭା ସମିତି ଓ ପ୍ରଜାମଣ୍ଡଳ ସଭା ନ କରିବାକୁ ନିର୍ଦ୍ଦେଶ ଥିଲା । ଏହି ସମ୍ବାଦ କମ୍ୟୁନିଷ୍ଟ ପାର୍ଟିର ସାପ୍ତାହିକ ମୁଖପତ୍ର "ମୁକ୍ତିଯୁଦ୍ଧ" ପତ୍ରିକାର ତା ୧୧ । ୧୦ । ୪୭ ମଃ ସଂଖ୍ୟା ୪ମ ପୃଷ୍ଠାରେ " ବାମଣ୍ଡାରେ ପ୍ରଜାମଣ୍ଡଳ ଉପରେ ୧୪୪ ପ୍ରତକ୍ଷ ସଂଗ୍ରାମଲାଗି ରାଜ୍ୟର ପ୍ରଜାମଣ୍ଡଳକୁ ଆହ୍ୱାନ " ଶୀରେନାମାରେ ପ୍ରକାଶ ପାଇବା ସଙ୍ଗେ ସଙ୍ଗେ ଅନ୍ୟ ପତ୍ର ପତ୍ରିକାରେ ମଧ୍ୟ ପ୍ରକାଶ ପାଇଅଛି ।

ଆମ୍ଭେମାନେ ସମସ୍ତେ କେଶାଇବାହାଲ ସଭରେ ଭାଷଣ ଦେଇ ୧୪୪ ଧାରା ଭଙ୍ଗି ଗିରଫ ହେବାକୁ ପ୍ରସ୍ତୁତ ହୋଇଗଲୁଁ କିନ୍ତୁ ଶ୍ରୀ ଲାଠ ଆମ୍ଭଙ୍କୁ ଉକ୍ତ ପ୍ରସ୍ତାବରୁ କ୍ଷାନ୍ତ କଲେ । ତାଙ୍କ ମତରେ ଉପରୋକ୍ତ ୮ ଜଣ ନେତୃସ୍ଥାନୀୟ ବ୍ୟକ୍ତି ଗିରଫ ହୋଇଗଲେ ଅନ୍ୟ କର୍ମୀମାନେ ଅହିଂସା ମାର୍ଗରେ ଆନ୍ଦୋଳନ କରି ପାରିବେ ନାହିଁ । ଫଳତଃ ଆନ୍ଦୋଳନ ହିଂସାତ୍ମକ ହୋଇଯିବ ଓ ରାଜଦରବାରକୁ ଦମନ କରିବାର ସୁଯୋଗ ମିଳିଯିବ । ଆମ୍ଭେ ତାଙ୍କର ଉପଦେଶ ଗ୍ରହଣ କଲୁଁ । ଉକ୍ତ ସଭା ଶ୍ରୀ ନିତ୍ୟାନନ୍ଦ ଶ୍ରୀବାସ୍ତବଙ୍କ ସଭାପତିତ୍ୱରେ ଗାନ୍ଧିବାଦୀ ନୀତିରେ ପରିଚାଳିତ ହୋଇ ଶାନ୍ତ ଶୃଙ୍ଖଳାରେ ଶେଷ ହେଲା । ଲୋକଙ୍କ ମଧ୍ୟରେ ଜାଗରଣ ଖେଳିଗଲା ।

ସଭା ଅନ୍ତେ ଗୋଟିଏ ଘରୋଇ ବୈଠକ କରି କେଶାଇବାହାଲ ପ୍ରାଇମେରୀ ପ୍ରଜାମଣ୍ଡ କମିଟୀ ଗଠନ କଲୁଁ । [୧] ଶ୍ରୀ ଗୁରୁଚରଣ ଗୌନ୍ତିଆ \

ସଭପତି [୨] ରେବତୀ ମୋହନ ମହାପାତ୍ର, ସଂପାଦକ [୩] ଶ୍ରୀ ଅନନ୍ତ ରାମ ସାହୁ [୪] ଶ୍ରୀ ପରମାନନ୍ଦ ପତି [୫] ଶ୍ରୀ ନନ୍ଦ କିଶୋର ପଟେଲ, ସଭ୍ୟ ଗ୍ରାମର ବହୁତ ବ୍ୟକ୍ତି ଚାରିଅଣା ଦେଇ ପ୍ରଜାମଣ୍ଡଳର ପ୍ରାଥମିକ ସଭ୍ୟ ହେଲେ । ଗ୍ରାମରେ ଉତ୍ସାହ ଖେଳିଗଲା । ସେଠାରୁ ଆମ୍ଭେ ଗୁବିନ୍ଦପୁର ଯାଇ ରାତି ୧୧ ଟାରେ ଟ୍ରେନ୍ ଧରି ଝାରସୁଗୁଡା ଯାଇ ସେ ସ୍ଥାନର କଂଗ୍ରେସ କର୍ମୀଙ୍କ ସହ ପରାମର୍ଶକରି ଭବିଷ୍ୟତ କର୍ମପନ୍ଥା ନିର୍ଦ୍ଧାରଣ କରିବାକୁ ସ୍ଥିର କଲୁଁ । ସଙ୍ଗେ ସଙ୍ଗେ ଗ୍ରାମସ୍ଥ ସଦ୍ୟ କର୍ମୀଙ୍କ ଚେଷ୍ଟାରେ ଆମ୍ଭମାନଙ୍କର ଖାଦ୍ୟପେୟର ବ୍ୟବସ୍ଥା ଓ ଖ୮ଣ୍ଡ ସାଇକଲ ଯୋଗାଡ ହୋଇଗଲା । ସାଇକଲରେ ଆମ୍ଭେ ରାତି ୯ ଟାରେ ବେଶାଇବାହାଲରୁ ବାହାରି ବାମରାରେ ୧୧.୩୦ ରେ ଟ୍ରେନ୍ ଧରି ଝାରସୁଗୁଡା ପହଞ୍ଚିଗଲୁ । ଆମ୍ଭମାନଙ୍କ ସହ ଗୁବିନ୍ଦପୁରରୁ ଆଉ ୬/୭ ଜଣ କର୍ମୀ ମଧ୍ୟ ଝାରସୁଗୁଡା ଆସିଲେ ସମସ୍ତେ ରେଲୱେ ପ୍ଲାଟଫର୍ମରେ ରାତ୍ରି ଯାପନ କଲୁଁ ଓ ସକାଳୁ ଝାରସୁଗୁଡାର ବିଶିଷ୍ଟ କଂଗ୍ରେସ କର୍ମୀ ଶ୍ରୀ ଘନଶଙ୍କର ଯୋଶୀଙ୍କ ଘରକୁ ଗଲୁଁ । ସେ ଆମ୍ଭମାନଙ୍କୁ ହାର୍ଦ୍ଦିକ ଅଭିନନ୍ଦନ ଜଣାଇଲେ । ଆମ୍ଭଠାରୁ ସମସ୍ତ କଥା ଶୁଣି,"କୁଛ ପରୁଓ୍ୱା ନେହିଁ, ସଂଗ୍ରାମ ଏଇସା ହି ହୋତାହେ, ଇସ୍‌କା ମୁକାବିଲା କରେଙ୍ଗେ" କହି ଆମ୍ଭମାନଙ୍କୁ ଶୀବଜୀ ବିଠଲଙ୍କ ଲାଲ-ବଙ୍ଗଳାରେ ରଖାଇ ନିଜ ସହ ଧର୍ମିଣୀଙ୍କ ଦ୍ୱାରା ଆମ୍ଭମାନଙ୍କର ଭୋଜନର ବ୍ୟବସ୍ଥା କଲେ । ଝାରସୁଗୁଡାର ବିଶିଷ୍ଟ କଂଗ୍ରେସ କର୍ମୀ ଶ୍ରୀ ବିହାରୀଲାଲ୍ ତନ୍ତ୍ରୀ, ଶୁକଦେବ ପ୍ରସାଦ, ଗୋଲାପ ଚନ୍ଦ୍ର ପାଣ୍ଡେ ପ୍ରଭୃତି ଆସି ଆମ୍ଭମାନଙ୍କୁ ଅଭିନନ୍ଦନ ଜଣାଇ ଉତ୍ସାହିତ କଲେ । ତା ୪ । ୧୦ । ୪୭ ମଃ ରେ ଝାରସୁଗୁଡାଠାରେ ବାମଣ୍ଡା ପ୍ରଜାମଣ୍ଡଳ କାର୍ଯ୍ୟକାରୀ କମିଟୀ ବୈଠକ ବସିଲା । ଅନେକ ଗୁରୁତ୍ୱ ପ୍ରସ୍ତାବ ପାସ୍ ହେଲା । ବିଶେଷକରି ଲଇଡାରୁ ଯେଉଁ ପ୍ରସ୍ତାବ ସବୁ ପଠାଯାଇଥିଲା ତାକୁ ପୁନଃସମର୍ଥନ କରାଗଲା । ତା ୩ । ୧୦ । ୪୭ ମଃ ରେ ଆମ୍ଭ ଉପରେ ଜାରି ହୋଇଥିବା ୧୪୪ ଧାରା ବିଷୟରେ ନିମ୍ନ ମତେ ଉତ୍ତର ଦିଆଗଲା :

ଶ୍ରୀଯୁକ୍ତ ବସନ୍ତ କୁମାର କର, ଦେଓ୍ୱାନ ବାମଣ୍ଡା

ମହାଶୟ,

ଭାରତର ଗଡଜାତ ମାନଙ୍କରେ କାର୍ଯ୍ୟ କରୁଥିବା କୌଣସି ପ୍ରଜାମଣ୍ଡଳ କମ୍ୟୁନିଷ୍ଟ ମତାବଲମ୍ବୀ ନୁହନ୍ତି । ବାମଣ୍ଡା ପ୍ରଜାମଣ୍ଡଳ ମଧ୍ୟ କମ୍ୟୁନିଷ୍ଟ ନୁହନ୍ତି । ଏହା ସଂପୂର୍ଣ୍ଣରୂପେ ଭାରତ ଜାତୀୟ କଂଗ୍ରେସର ନୀତିରେ ପରିଚାଳିତ ହେଉଅଛି । ବାମଣ୍ଡାର ନିରୀହ ପ୍ରଜାବୃନ୍ଦଙ୍କ ନ୍ୟାୟୋଚିତ ଦାବୀ ସହ ଜାଗରଣକୁ ଦମନ କରିବା ନିମନ୍ତେ ଓ ବାମଣ୍ଡା ସରକାରଙ୍କ ପୃଷ୍ଠପୋଷକତାରେ ଗଠିତ ଦଲାଲ ପ୍ରଜାମଣ୍ଡଳକୁ ରକ୍ଷା କରିବା ନିମନ୍ତେ ଆପଣଙ୍କ ନିର୍ଦ୍ଦେଶରେ କୁଚିଣ୍ଡା ସ.ଡ.ମା ତା ୩ । ୧୦ । ୪୭ ମଃରେ ଆମ୍ଭ ପ୍ରଜାମଣ୍ଡଳ କର୍ମୀଙ୍କ ଉପରେ ୧୪୪ ଧାରା ନୋଟିସ ଜାରି କରିଅଛନ୍ତି । ଏହା ଆପଣଙ୍କ ଢୁଙ୍କାପିଟା ଶାସନର ଏକ ନମୁନା ନୁହେଁ କି ? ଏବଂ ଏପରି କରିବାଦ୍ୱାରା ବାମଣ୍ଡା ପ୍ରଜାମଣ୍ଡଳକୁ ଆପଣ ସତ୍ୟାଗ୍ରହ କରିବାକୁ ବାଧ୍ୟ-କରୁନାହାନ୍ତି କି ? ସମୟ ଆସୁଛି ଏହାର ଉପଯୁକ୍ତ ଉତ୍ତର ଦିଆଯିବ ।

ତା ୪ । ୧୦ । ୪୭ ମଃ — ବାମଣ୍ଡା ପ୍ରଜାମଣ୍ଡଳ କାର୍ଯ୍ୟକାରୀ କମିଟୀ ଝାରସୁଗୁଡା ପ୍ରସ୍ତାବ ମତେ । ସ୍ୱା- ରତ୍ନାକର ପଟେଲ, ଗୁଣନିଧି ଗୌନ୍ତିଆ-ଯୁଗ୍ମ ସଂପାଦକ ବାମଣ୍ଡା ପ୍ରଜାମଣ୍ଡଳ । ଏହି ପତ୍ର ଓ ଅନ୍ୟାନ୍ୟ ପ୍ରସ୍ତାବର ନକଲ ସବୁ ବାମଣ୍ଡା ଦେଓ୍ୱାନ ଜରିଏ ବାମଣ୍ଡା ରାଜଦରବାରକୁ ଓ କୁଚିଣ୍ଡା ସ.ଡ ମା. ଙ୍କ ନିକଟକୁ ଡାକଯୋଗେ ପଠାଗଲା । ସେହି ୧୪୪ ଧାରା ନୋଟିସ ସବୁ ପ୍ରତ୍ୟାହାର କରିନେବାକୁ ପ୍ରସ୍ତାବ ମଧ୍ୟ ହୋଇଥିଲା ଝାରସୁଗୁଡା ବନ୍ଧୁମାନେ ଆନ୍ଦୋଳନକୁ ତୀବ୍ରତର କରିବାକୁ ଆମ୍ଭଙ୍କୁ ଉପଦେଶ ଦେଲେ ।

ତା ୧୫ । ୯ । ୧୯୪୭ ମଃ ରେ ସ ଡ.ଅ. କୁଚିଣ୍ଡା ସାଉନ୍ତମାଳ ରାଜ-ସପକ୍ଷବାଦୀ ପ୍ରଜାଙ୍କ ଠାରୁ ଉକ୍ତ ଗ୍ରାମ ଗୌନ୍ତିଆ ବୃନ୍ଦରାୟଙ୍କ ବିରୁଦ୍ଧରେ ୩ଟା ମିଥ୍ୟା ରିପୋର୍ଟ ଲେଖାଇ ନେଲେ ଓ ସେହି ରିପୋର୍ଟ ଉପରେ କାର୍ଯ୍ୟାନୁଷ୍ଠାନ କରି ତା ୮ । ୧୦ । ୪୭ ମଃ ରେ ବୃନ୍ଦରାୟ ଗୌନ୍ତିଆ ଓ ସରେଜ କାନ୍ତ ପଟେଲଙ୍କୁ ବାମଣ୍ଡା ରଜା ଉକ୍ତ ମୌଜା ଗୌନ୍ତିଆସଦରୁ ବେଦଖଲ କଲେ । ପ୍ରଜାମାନଙ୍କର ରିପୋର୍ଟ, ରଜାଙ୍କ ଆଦେଶ ଓ କମି-ଶନର ବି. ଶୀବରମଣଙ୍କ ଅପିଲ ବିଚାର ଆଦେଶ ଏଠାରେ ଦିଆଗଲା ।

କୁଚିଣ୍ଡା ସ ଡ ମା.ଙ୍କ ୧୪୪ ଧାରା ନୋଟିସ ଯୋଗୁଁ କୁଚିଣ୍ଡା ସ.ଡ.ରେ ଆମ୍ଭେ କେତେ ଜଣ ସଭାସମିତି ନକରି ଦେବଗଡ ସ.ଡ.ରେ ସଭା ସମିତି

ଓ ମେମ୍ବର ସଂଗ୍ରହ କରିବା ନିମନ୍ତେ ପ୍ରସ୍ତାବ କଲୁଁ । ଯେଉଁମାନଙ୍କ ଉପରେ ୧୪୪ ଜାରି ହୋଇନଥିଲା ସେମାନେ କୁଚିଣ୍ଡା ସ ଡ଼.ର ଗାଁ-ଗଣ୍ଡାରେ ଆମ୍ଭର ସଭା ସମିତି ଓ ପ୍ରଜାମଣ୍ଡଳ ସଭ୍ୟ ସଂଗ୍ରହ କାର୍ଯ୍ୟ ଚଳୁ ରଖିଲେ । ଏ ସ୍ଥାନରେ ଜନସାଧାରଣ ଅପେକ୍ଷାକୃତ ଜାଗ୍ରତ ହୋଇ ଉଠି-ଥିଲେ । ଅନ୍ୟପକ୍ଷେ ଦେବଗଡ ସ.ଡ. ଉପରେ ରଜା, ଦେଓ୍ୱାନ, ପୁଲିସ ସୁପରିନ୍‌ଟେନ୍‌ଡେଣ୍ଟ, ତହସିଲଦାର, ଏମ୍.ଡ଼.ଓ. ପ୍ରଭୃତିଙ୍କ ପ୍ରତକ୍ଷ ଦୃଷ୍ଟି ଥିବାରୁ ଓ ସନ୍ ୧୯୩୮ ମଃ ପ୍ରଜା ଆନ୍ଦୋଳନ ବେଳେ ସେ ଅଞ୍ଚଳରେ ପୁଲିସର ବ୍ୟାପକ ନିର୍ଯ୍ୟାତନା ଓ ଅବିଗ୍ଭରରେ ୩ ବର୍ଷ ଲେଖାଏଁ କାରାଦଣ୍ଡ ହେତୁ ସେ ଅଞ୍ଚଳବାସୀ ଟିକିଏ ଦବି ଯାଇଥିଲେ । ଦେବଗଡ ସ ଡ଼.ରେ ଜାଗରଣ ଖେଳାଇଦେବା ନିମନ୍ତେ ଲେଖକ (୧) ରମଣୀ ରଞ୍ଜନ ପଟେଲ ବନ୍ଧପାଲି (୨) ଭରତ ଚନ୍ଦ୍ର ଚୌଧୁରୀ, ଧୁଡ଼ପାଲି (୩) ଶ୍ରୀ ବୃନ୍ଦାବନ ପଟେଲ, କେନାଡ଼ିପା (୪) ଶ୍ରୀ ଦଶରଥ ପଟେଲ, ବଡମୁଣ୍ଡାଲୋଇ (୫) ଶ୍ରୀ ଛାଲ ଚୌଧୁରୀ (୬) ଶ୍ରୀ ମଦନମୋହନ ପଟେଲ (୭) ଶ୍ରୀ ପୂର୍ଣ୍ଣଚନ୍ଦ୍ର ବାଘ, ପାରୁଆଭଡ଼ ପ୍ରଜାମଂଡଳ କର୍ମୀ ବୃନ୍ଦଙ୍କୁ ସାଙ୍ଗରେ ନେଇ ତା ୧୦ । ୧୦ । ୪୭ ମଃ ଦିନ ଦେବଗଡ ଅଭିମୁଖେ ବାହାରିଲୁ । ରମଣୀ ରଞ୍ଜନ, ଭରତ ଓ ବୃନ୍ଦାବନ ପ୍ରଥମେ ସାଇକେଲରେ ଚାଲିଗଲେ । ମୁଁ କୁଚିଂଡାରୁ ଷ୍ଟେଟ ସର୍ଭିସ ବସରେ ଗଲି । ଅନ୍ୟ ୪ ଜଣ ଭେଡପୁରରୁ ବସ୍‌ରେ ମୋ ସାଙ୍ଗରେ ଗଲେ । ସାଇକଲରେ ଯାଉଥିବା ୩ ଜଣ ବର୍ଷା ହେତୁ ରାସ୍ତାରେ ଭିଜିଗଲେ ଓ ଦେବଗଡ ନିକଟବର୍ତ୍ତୀ ଟାଇସର ମୌଜାରେ ସେମାନଙ୍କ ଲୁଗାପଟା ସୁଖାଇ ବସ୍‌କୁ ଅପେକ୍ଷା କରିଥାନ୍ତି । ବସ ଟାଇଁସର ମୌଜାକୁ ପହଞ୍ଚିବା ମାତ୍ରେ ମୋ ସଙ୍ଗେ ଥିବା ୪ ଜଣ ମଧ୍ୟ ବସରୁ ଓହ୍ଲାଇପଡଲେ ଓ ଆସନ୍ତା ସକାଳେ ମୋ ସହିତ ୭ ଜଣ ଦେବଗଡରେ ସାକ୍ଷାତ ହେବାର ପ୍ରତିଶ୍ରୁତି ଦେଲେ । ଟାଇଁସର ଉ.ପ୍ରା ସ୍କୁଲ ହେ ମା. ଶ୍ରୀ ରାଜୀବ ଲୋଚନ କର ଆମ୍ଭର ୭ ଜଣ କର୍ମୀଙ୍କୁ ସ୍ୱାଗତ ଜଣାଇଲେ ଓ ନିଜେ ରନ୍ଧାବଢ଼ା କରି ଏମାନଙ୍କୁ ଖାଇବାକୁ ଦେଲେ ଓ ସ୍କୁଲ ଘରେ ଶୋଇବା ନିମନ୍ତେ ସ୍ଥାନ କରିଦେଲେ । ଗ୍ରାମସ୍ଥ ଚୌକିଦାର ଏମାନଙ୍କୁ ସରକାରୀ ସ୍କୁଲ ଘରେ ଶୋଇବାକୁ ବାରମ୍ବାର ମନାକଲା ଓ ଏମାନଙ୍କୁ ଗାଳି ଦେଲା । ତହୁଁ ଏମାନେ ଗ୍ରାମର ପଟାଭଡରେ ଆସି ଶୋଇଲେ । ମୁଁ ଦେବଗଡରେ ମୋର ବାଲ୍ୟ ବନ୍ଧୁ ପଶୁଡାକ୍ତର ନିରଞ୍ଜନ ଗୌନ୍ତିଆଙ୍କ ସରକାରୀ କ୍ୱାଟରରେ ରହିଲି । ରାତି ପ୍ରାୟ ୮ଟା ସମୟରେ ତତ୍‌କାଳୀନ

ଦେବଗଡ ସର୍କଲ ପୁଲିସ ଇନ୍‌ସପେକ୍ଟର ଶଶୀଭୂଷଣ ମାହାନ୍ତ ଟାଇଁସର ଗ୍ରାମକୁ ଯାଇ ଉକ୍ତ ୭ ଜଣଙ୍କୁ ପଟାଭଡ଼ରେ ବିଶ୍ରାମ କରିଥିବାର ଦେଖି ଆସିଲେ ଓ ମତେ ଦେବଗଡ ଟାଉନ୍ ଏସ୍. ଆଇ. ପଞ୍ଚାନନ ବେହେରା ନିରଞ୍ଜନଙ୍କ ଘରେ ଦେଖିଗଲେ ।

ରାତି ପ୍ରାୟ ୧୦ ଘଣ୍ଟା ବେଳକୁ ଗୋଟିଏ ଷ୍ଟେସନ୍‌ୱାଗନ ଗାଡ଼ିଧରି ଏସ୍. ଆଇ. ପଞ୍ଚାନନ ଅନ୍ୟ ୨ ଜଣ ବ୍ୟକ୍ତି ସହ ଟାଇସର ଗ୍ରାମ ପଟାଭଡ଼କୁ ଆସିଲେ ଓ ସେଠାରେ ଶୋଇଥିବା ଆମ୍ଭର ପ୍ରଜାମଣ୍ଡଳ କର୍ମୀଙ୍କୁ ଉଠାଇଲେ ଓ କହିଲେ " ରଜା ଗୁଣନିଧି ଗୌନ୍ତଆଙ୍କ ସହ କଥାବାର୍ତ୍ତା କରୁଅଛନ୍ତି । ଓ ସେମାନେ ଆପଣମାନଙ୍କ ଉପସ୍ଥିତି ଦରକାର କରୁଅଛନ୍ତି । ଏଣୁ ଗାଡ ପଠାଇ ଅଛନ୍ତି । ଆସନ୍ତୁ ଯିବା । ତାଙ୍କ ସାଙ୍ଗରେ ଥିବା ୨ ଜଣ ବ୍ୟକ୍ତି ମଧ୍ୟ ନିଜକୁ ଦେବଗଡ ସ ଡ.ର ପ୍ରଜାମଣ୍ଡଳ କର୍ମୀ ବୋଲି ନିଜକୁ ପରିଚୟ ଦେଲେ । ଆମ୍ଭର କର୍ମୀମାନେ ରାତିରେ ଉକ୍ତ ଗାଡ଼ିରେ ଯିବାକୁ ଅସ୍ୱୀକାର କଲେ, କିନ୍ତୁ ପୁଲିସ ଏସ୍. ଆଇ. ଓ ତାଙ୍କ ସହିତ ଥିବା ୨ ଜଣ ବ୍ୟକ୍ତି ନାନାଦି ମିଥ୍ୟା କଥା କହି ତାଙ୍କୁ କଳେ କୌଶଳେ ଖୋସାମତ କରି ବସାଇଲେ । ଗାଡ ଷ୍ଟାର୍ଟ ହେବାମାତ୍ର ଉକ୍ତ ୨ ଜଣ ବ୍ୟକ୍ତି ଗାଡ଼ର ଦରଜାକୁ ଜଗି ବସିଲେ । ସଙ୍ଗେ ସଙ୍ଗେ ଗାଡ ଦେବଗଡ ଅଭିମୁଖରେ ନଯାଇ ବିପରୀତ ଦିଗରେ ଦ୍ରୁତ ଗତିରେ ଚଳିଲା ଓ ଆଖି ପିଛୁଳାକେ ତିଲେଇବଣୀ ଠାରେ ଛିଡ଼ା ହେଲା । ସେଠାକୁ ଗୋଟିଏ ଟ୍ରକରେ ୨୫/୩୦ ଜଣ ପୁଲିସ କନ୍‌ଷ୍ଟେବଲ ଯାଇ ଅପେକ୍ଷା କରି ରହିଥିଲେ । ଏହି ଗାଡ ପହଞ୍ଚିବା ମାତ୍ରେ ତାକୁ ଘେରିଆଡେ ଘେରି ଗଲେ ଓ ଉକ୍ତ ଏସ୍. ଆଇ ଙ୍କ ନିର୍ଦ୍ଦେଶମତେ କର୍ମୀମାନଙ୍କୁ ଗାଡ଼ରୁ ଟାଣିଆଣି ନିସ୍ତୁକ ପ୍ରହାର କଲେ । ସେମାନେ ମୃତପ୍ରାୟ ବେହୋସ ହେଇଯିବାରୁ ଉକ୍ତ ଟ୍ରକରେ କାଠଗଣ୍ଡି ଭଳିଆ ଜଣକ ଉପରେ ଆଉଜଣକୁ ନେଇ ଧୂଡ଼-ଖୋଳ ନିବିଡ ଜଙ୍ଗଲରେ ପକାଇ ଦେଲେ । ସେମାନେ ଧରିଥିବା ପ୍ରାଥମିକ ସଭ୍ୟଖାତା ଓ ଅନ୍ୟାନ୍ୟ ଜିନିଷପତ୍ର ସାଇକେଲ କେଉଁଆଡେ ଗଲା ତାର କୌଣସି ଇୟତା ରହିଲା ନାହିଁ । ତାଙ୍କର ଗାନ୍ଧିଟୁପି ସବୁ ପୋଡ଼ିଦେଲେ ନାନାଦି ଅସଭ୍ୟ ଅସାବ୍ୟ ଭଷାରେ ଗାଳି ଦେଲେ । ଭବି-ଷ୍ୟତରେ ଏପରି ନକରିବାକୁ ତାଗିଦ୍ ଦେଲେ ।

ତା ୧୧ । ୧୦ । ୪୭ ମଃ ସକାଳୁ ପଦର ଏସ୍. ଡ଼. ଓ. ଦେବଗଡଙ୍କ ସ୍ୱାକ୍ଷରରେ ମୋ ଉପରେ ଘ୧୨ଣ୍ଟା ମଧ୍ୟରେ ଦେବଗଡ ସ: ଡ଼: ଛାଡ଼ ଚାଲିଯିବାକୁ ଓ ଏକମାସ ପର୍ଯ୍ୟନ୍ତ ଦେବଗଡ ସ. ଡ଼. ରେ ପ୍ରବେଶ ନ କରିବାକୁ ୧୪୪ ଧାରା ନୋଟିସ ଜାରୀ ହେଲା । ଏହି ନୋଟିସ ନିଜେ ନାଜିର ଦୁର୍ଯୋଧନ ପ୍ରଧାନ ମୋତେ ଦେଲେ । ଏହା ପାଇବା ମାତ୍ରେ ମୁଁ ସଙ୍ଗେ ସଙ୍ଗେ ଦେଓ୍ୱାନ ତଥା ବାମଣ୍ଡା ରାଜ୍ୟ General Minister ବସନ୍ତକୁମାର କରଙ୍କ ସରକାରୀ କ୍ୱାର୍ଟରକୁ ଯାଇ ଏହି ନୋଟିସର ପ୍ରତିବାଦ କଲି ।

ସେତେବେଳେ ଉଭୟର ପରିସ୍ଥିତି, ରାଜାମାନଙ୍କ ଭବିଷ୍ୟତ, ମୟୂରଭଞ୍ଜ, ନୟାଗଡ ପ୍ରଭୃତି ରାଜାଙ୍କ ପ୍ରଜାମାନଙ୍କୁ ସ୍ୱାୟତ୍ତଶାସନ ପ୍ରଦାନ ବିଷୟରେ ମୋ ସ୍ମରଣକୁ ଯାହା ଆସିଲା ସେ ସବୁ ତାଙ୍କ ସମ୍ମୁଖରେ ପ୍ରକାଶ କରିବାରୁ ସେ ଏକାବେଳକେ ମୋ ପ୍ରତି ନମ୍ରଭାବ ପ୍ରଦର୍ଶନପୂର୍ବକ ପାଖରେ ବସାଇ କ'ଣ କ'ଣ କଲେ ବାମଣ୍ଡା ପ୍ରଜାଙ୍କ ଉନ୍ନତି ହେବ, ସେ କ'ଣ କ'ଣ କରିଅଛନ୍ତି, କ'ଣ କ'ଣ କରିବାକୁ ଯାଉଛନ୍ତି ସେ ବିଷୟରେ ମତେ ବୁଝାଇଲେ । ଏଥି ପୂର୍ବରୁ ତାଙ୍କ ନିକଟକୁ ପଠାଇଥିବା ପ୍ରସ୍ତାବ ରାଜାଙ୍କ ଉପଦେଷ୍ଟା ହିସାବରେ କଣ କରିବାକୁ ସେ ଯାଉଛନ୍ତି ସେ ବିଷୟରେ ମଧ୍ୟ ତାଙ୍କୁ ପଚାରିଲି । ଏହିପରି ପ୍ରାୟ ଘ୧ଣ୍ଟା ସମୟ ଶାନ୍ତ ପୂର୍ଣ୍ଣ ବାତାବରଣ ମଧ୍ୟରେ କଥାବାର୍ତ୍ତା ହେବା ଉତ୍ତାରେ ୧୪୪ ଧାରା ନୋଟିସ ବଷୟରେ ସେ ମୋତେ କହିଲେ, "ଏହା ସରକାରଙ୍କ ଗୋଟିଏ ନୀତିମାତ୍ର । ଆପଣ ଇଚ୍ଛାମତେ ଦେବଗଡରେ ରହିପାରନ୍ତି ।" ପୁନଶ୍ଚ ନିରଞ୍ଜନ ବାବୁଙ୍କୁ ଡକାଇ ମତେ ଭଲଭବେ ରଖିବାକୁ ଉପଦେଶ ଦେଲେ । ପ୍ରତିବାଦ କରି ଗିରଫ ହେବାର ମୋର ଉଦ୍ଦେଶ୍ୟ ପଣ୍ଡ ହେଲା । ମତେ ଦେବଗଡରେ ରଖିବାଦ୍ୱାରା ତାଙ୍କର ଉଦ୍ଦେଶ୍ୟ ସାଧିତ ହେଲା । ମୁଁ ଅସୁବିଧାର ଅଜ୍ଞାତରେ ପଡଗଲି— ମୁଁ କୁଚିଣ୍ଡା ଯାଇ କର୍ମୀଙ୍କ ଅବସ୍ଥା ଦେଖିଥିଲେ ସେଠାରେ ଉତ୍ତେଜନା ବୃଦ୍ଧି ପାଇଥାନ୍ତା । ଏଣେ ମୋର ସହକର୍ମୀଙ୍କ ବିନା ଦେବଗଡ ସ.ଡ଼.ର ଗାଁ ଗଣ୍ଡାକୁ ଏକାକୀ ଯାଇ ପ୍ରଜା- ମଣ୍ଡଳରେ ପ୍ରଚାର କାର୍ଯ୍ୟ କରିବା ସମ୍ଭବ ନୁହେଁ । କାହିଁକି ମୋର କର୍ମୀ- ଭାଇମାନେ ଟାଇଁସର ଗ୍ରାମରୁ ଆସିଲେ ନାହିଁ ସେମାନଙ୍କ ଉପରେ ମଧ୍ୟ

ଏହିପରି ୧୪୪ ଢାରି ହେଲା କି ? ସେମାନେ ବାହାରେ ବାହାରେ ଆଠପଡା ଅଞ୍ଚଳକୁ ଚାଲିଗଲେ କି ? ଇତ୍ୟାଦି ବହୁତ ଭାବନା ମନଭିତରେ ଉଙ୍କି ମାରିଲା । ଦେବଗଡର ଚିହ୍ନା ପରିଚିତ ଲୋକମଧ୍ୟ ମୋଠାରେ କଥାବାର୍ତ୍ତା ହେଉନାହାନ୍ତି । ବଡ ଉଦ୍‌ବିଗ୍ନ-ମନା ହୋଇ ତା ୧୧ । ୧୦ । ୪୭ ଦିନଟି ଅତିବାହିତ ହେଲା ।

ତା ୧୨ । ୧୦ । ୪୭ ମଃ ଦିନ ସକାଳ ପ୍ରାୟ ୭.୩୦ ବେଳକୁ ଦେବଗଡ ଜେଲଖାନାକୁ ଗଲି କାଳେ ଆମ୍ଭର ପ୍ରଜାମଣ୍ଡଳ ସଭପତି ଶ୍ରୀ ଦାଶରଥି ମିଶ୍ର ବରିଷ୍ଠ କର୍ମୀ ଶ୍ରୀ ରାମଚନ୍ଦ୍ର ନାୟକ ଓ ଶ୍ରୀ ଗୌରୀଶଙ୍କର ମହାପାତ୍ରଙ୍କର ସାକ୍ଷାତ ପାଇପାରିବି ବୋଲି । ଜେଲ୍ ଫାଟକକୁ ପହଞ୍ଚିବା ମାତ୍ରେ ଜେଲଦାରୋଗା ମୋ କଥା ଶୁଣିବା ପୂର୍ବରୁ ମତେ ସେ ସ୍ଥାନ ଛାଡ଼ ଚାଲିଯିବାକୁ କହିଲେ । ତହୁଁ ମନ ଦୁଃଖରେ ଶାସନ ସାହିକୁ ଆସୁଥିବା ବେଳେ ତତ୍‌କାଳୀନ କଟରକେଲା ଜମିଦାର ହରେଶ୍ୱର ଦେହୁରୀଙ୍କ ଦେବଗଡ ସ୍ଥିତ ବଙ୍ଗଳା ସମ୍ମୁଖରେ ବାମଣ୍ଡାର Home minister ବୋଲଉଥିବା ବଡକୁମାର ପ୍ରତାପ ଗଙ୍ଗଦେବଙ୍କ ସହିତ ସାକ୍ଷାତ ହେଲା । ସେ ଖଣ୍ଡେ Weapen Carrier ଭିପ୍‌ଗାଡ଼ ନିଜେ ଚଳାଇ ଆସୁଥିଲେ । ମତେ ଦେଖି ହଠାତ୍ ଗାଡ଼ ଛିଡାକଲେ ମୁଖରେ ଧୂମ୍ରପାନକାରି ଗୋଟିଏ ଚିଲମ (ପାଇପ୍) ଚେପିବାଇ ଧରିଥାନ୍ତି । ଗାଡ ଷ୍ଟାର୍ଟ୍ ଅବସ୍ଥାରେ ଥାଏ । ସେ ମୋତେ ପ୍ରଶ୍ନ କଲେ - କାହିଁକି ଏପରି ଗୋଳମାଳ କରୁଅଛ ? ମୁଁ କହିଲି, "ବର୍ତ୍ତମାନ ଦେଶର ପରିସ୍ଥିତି ଆପଣ ମୋ ଅପେକ୍ଷା ଭଲ-ଭବେ ଜାଣୁଛନ୍ତି । ମୟୁରଭଞ୍ଜ, ବଲାଙ୍ଗିର, ନୟାଗଡ ରାଜାମାନେ ଯେପରି କରିଅଛନ୍ତି ଏଠାରେ ମଧ୍ୟ ସେପରି ହେଉ । ଅକାରଣରେ ଦାଶରଥି ମିଶ୍ର ପ୍ରଭୃତିଙ୍କୁ କାହିଁକି ଜେଲରେ ରଖିଛନ୍ତି ?" ସେ ସଙ୍ଗେ ସଙ୍ଗେ ଇଂରାଜୀରେ ଉତ୍ତର ଦେଲେ—

"Those Rajas are afiminates like one of Pallahara where a few days back Pabitramohan Pradhan held a meeting & said, the Govt of the feudatory chief are as strong as the rope made of straw and the Govt. of Britishers are stronger than iron chair and he dares to come to Bamra state. If he steps into the boarder of Bamra I shall be the firstman to shed blood then and there."

ତାଙ୍କ ଉତ୍ତେଜିତ ସ୍ୱର ସହ ଷ୍ଟାର୍ଟ ହୋଇ ରହିଥିବା ଗାଡ଼ି କାଳେ ମୋ ଉପରକୁ ମାଡ଼ ଆସିବା ଆଶଙ୍କାକରି ସେହି ଗାଡ଼ିର ପଛପଟକୁ ଚାଲି ଆସିଲି । ସେ ଆଗକୁ ଚାଲିଗଲେ ।

ମୁଁ ମୋର ଶ୍ରଦ୍ଧେୟ ଗୁରୁ ଶ୍ରୀ ଧରଣୀଧର ଦେହୁରୀ ହେଡ ମାଷ୍ଟର (ତତ୍‌କାଳୀନ) ରାଜକୁମାର ହା.ଇ. ସ୍କୁଲଙ୍କ ବସାକୁ ଆସି ଘଟିଯାଇଥିବା ବିଷୟମାନ ତାଙ୍କୁ ଶୁଣାଇଲି । ସେ କହିଲେ ଓଡ଼ିଆ ସମ୍ବାଦପତ୍ର ଦେବଗଡ଼ରେ ପଢ଼ିବା ମନା । ଆମ୍ଭେ ଇଂରାଜୀ ପତ୍ରିକା ସବୁ ପଢ଼ୁଅଛୁ । ମୟୂରଭଞ୍ଜ; ବଲାଙ୍ଗିର ଓ ନୟାଗଡ଼ ରାଜାମାନେ ଯାହା କରିଅଛନ୍ତି, ଭଲ କରିଅଛନ୍ତି । ବାମଣ୍ଡା ତଥା ଅନ୍ୟ ରାଜାମାନେ ମଧ୍ୟ ସେପରି କରିବା ଉଚିତ । ଏମାନେ ତାଙ୍କ ତାଙ୍କ ଭିତରେ ମନ୍ତ୍ରିମଣ୍ଡଳ ଗଠନ କରି ବାହାରକୁ ଜଣାଉଛନ୍ତି ଯେ, ପ୍ରଜାଙ୍କୁ ସ୍ୱାୟତ୍ତ ଶାସନ ଦେଇ ସାରିଛନ୍ତି । ତାଳଚେର ତରଫରୁ ଦେବଗଡ଼ ସ.ଡ. ବାସୀ ପ୍ରେରଣା ପାଉଅଛନ୍ତି । କୁଚିଣ୍ଡା ତରଫରୁ ତୁମ୍ଭେ ଯେଉଁ ପ୍ରେରଣା ଦେବାର ମନସ୍ଥ କରି ଅଛ ତାହା ହୋଇପାରିବ ନାହିଁ । ତୁମେ ଶୀଘ୍ର କୁଚିଣ୍ଡା ଚାଲିଯାଅ'' । ସେ ସ୍ଥାନର ଅବସ୍ଥା ଅସମ୍ଭାଳ ସେ ଗତ ରାତିରେ ଘଟିଥିବା ଘଟଣାର ଖବର ପାଇଥିଲେ, କିନ୍ତୁ ପ୍ରକାଶ୍ୟରେ କିଛି ନକହି କୁଚିଣ୍ଡାକୁ ଫେରିଯିବାକୁ ନିର୍ଦ୍ଦେଶ ଦେଲେ । ମୁଁ ତାଙ୍କ ଉପଦେଶ ଅନୁସାରେ ସଙ୍ଗେ ସଙ୍ଗେ ଦେବଗଡ଼ ଛାଡ଼ିବାକୁ ଉଦ୍ୟତ ହେଲି । ବସଷ୍ଟେଣ୍ଡକୁ ଆସିଲି । ସେଠାରେ ମୋର ସହପାଠୀ ନାରାୟଣ ଚନ୍ଦ୍ର ଦାସ ମୋ ନିକଟକୁ ଆସି କହିଲା, "ଶୁଣ ବୋ, ତୋ ସଙ୍ଗେ ପ୍ରତାପ ଆଲୋଚନା କରିବାକୁ ଚାହୁଁଛନ୍ତି ତୁ ଆଜି ରହିଯା । କାଲି ତାଙ୍କ ସଙ୍ଗେ ବସି ଭଲଭାବେ କଥାବାର୍ତ୍ତା ହେବ ।'' ମୁଁ ସଙ୍ଗେ ସଙ୍ଗେ ଦାସକୁ ରହୁ ନଥିବାର ଶୁଣାଇଦେଲି । ମୁଁ କୁଚିଣ୍ଡା ଆସି ଆମ ଅଫିସରୁ ଜାଣିବାକୁ ପାଇଲି ଯାହିକି ମୋର ପ୍ରଜାମଣ୍ଡଳ କର୍ମୀମାନେ ମୋ ନିର୍ଦ୍ଦେଶମତେ ତା ୧୧ । ୧୦ । ୪୭ ।୪ ସକାଳେ ଦେବଗଡ଼ ଯାଇ ମୋଠାରେ ସାକ୍ଷାତ ହେଲେ ନାହିଁ । ।ଧିକନ୍ତୁ ଜାଣିଲି ଯେ ଉକ୍ତଦିନ ସକାଳେ ସକାଳୁଆ ପବନ ପାଇ ଚେତା ।ାଇଲେ । ସଡ଼କ ନିକଟସ୍ଥ ଝରଣାର ପାଣି ପିଇ ଛୁଟା ଅନ୍ଧକୁ ସାହାଯ୍ୟ ·ରିବା ନ୍ୟାୟରେ ପରସ୍ପରକୁ ସାହାଯ୍ୟ କରି ଶିରିଡ ଗ୍ରାମ ପର୍ଯ୍ୟନ୍ତ ।ାସିଲେ । ସେଠାରୁ ଆମ୍ଭର ପ୍ରଜାମଣ୍ଡଳ କର୍ମୀ ଓ ଅନ୍ୟାନ୍ୟ ବନ୍ଧୁଗଣ ।ାଙ୍କୁ ଗୋରୁ ଗାଡ଼ିରେ ଭେଡ଼ପୁର ପର୍ଯ୍ୟନ୍ତ ଆଣିଲେ । ଭେଡ଼ପୁରରୁ

ବୈକୁଣ୍ଠ ନାଥ ଶର୍ମା ତାଙ୍କୁ ସେହିପରି ଗୋରୁ ଗାଡ଼ କରି ବକ୍ସମା ପର୍ଯ୍ୟନ୍ତ ପଠାଇଲେ । ସେତେବେଳେ ଆମ୍ଭର କୁଚିଣ୍ଡା ସ ଢ଼. ପ୍ରଜାମଣ୍ଡଳ ସଭାପତି ଶ୍ରୀ ଦିନବନ୍ଧୁ ଚୌଧୁରୀ ସେଠାକୁ ଆସି ତାଙ୍କର ପ୍ରାଥମିକ ସେବାଯତ୍ନ କଲେ ଓ କୁଚିଣ୍ଡା ଥାନାକୁ ଯାଇ ଡାଏରୀ ନେବାକୁ କହିଲେ । ଏସ୍. ଆଇ. ନେତ୍ରାନନ୍ଦ ପାଢ଼ୀ ଇତଲାଏ ନେବାକୁ ମନା କରିଦେଲେ । ତହୁଁ ସେମାନେ ଡାକ୍ତରଖାନାକୁ ଗଲେ । ଡାକ୍ତର ଭବାନି କାନ୍ତ ଚକ୍ରବର୍ତ୍ତୀ କହିଲେ, "ମୁଁ ଚିକିତ୍ସାକରି ସମସ୍ତଙ୍କୁ ଭଲ କରିଦେବି କିନ୍ତୁ ସାର୍ଟିଫିକେଟ ଇତ୍ୟାଦି ମାଗିଲେ ଦେଇପାରିବି ନାହିଁ ।" ତାପରେ ଆମ୍ଭର ଦଶରଥ ନାୟକ, ଯାହାଙ୍କବାହାଲ ପ୍ରଭୃତି ଆଘାତି କର୍ମୀମାନଙ୍କୁ କାହାକୁ ଦୋଳାରେ ତ କାହାକୁ ବାହାକୁ ଗୋରୁଗାଡ଼ରେ ନେଇ ଝାରସୁଗୁଡା ହାସପାତାଳରେ ପହଞ୍ଚାଇଲେ । ସେତେବେଳେ ଝାରସୁଗୁଡା କଂଗ୍ରେସ ଅଫିସ ଚାର୍ଜରେ ଥିଲେ ଶ୍ରୀ ଫକିର ମୋହନ ଶତପଥୀ ତାଙ୍କ କାନକୁ ଏହିକଥା ପହଞ୍ଚିବା ମାତ୍ରେ ସେ ଅନ୍ୟାନ୍ୟ କଂଗ୍ରେସ କର୍ମୀ ବିହାରିଲାଲ, ସୁକଦେବ ପ୍ରସାଦ, ଚନ୍ଦ୍ର ଚଣ୍ଡୀ, ଲନ୍ନୁ ଶଙ୍କର ଯୋଶୀ ପ୍ରଭୃତିଙ୍କୁ ଖବର ଦେଇ ରୋଗୀ ତଥା ତାଙ୍କ ସହଗାମୀ କର୍ମୀମାନଙ୍କ ଖାଦ୍ୟପେୟର ବ୍ୟବସ୍ଥା ସଙ୍ଗେ ସଙ୍ଗେ ହେଲା । ଡାକ୍ତର, ନର୍ସ, କମ୍ପାଉଣ୍ଡର ଡ୍ରେସର ଆସି ୭ ଜଣ ଆଘାତିଙ୍କୁ ଯାହା ଦରକାର ସେ ସବୁ ଔଷଧ ପତ୍ର ଦେଇ ବେଣ୍ଡେଜ କରି ଯତ୍ନସହକାରେ ଖଟପଲଙ୍କରେ ଶୋଆଇଲେ । ଝାରସୁଗୁଡାର କଂଗ୍ରେସ କର୍ମୀମାନେ ସାଙ୍ଗରେ ଯାଇଥିବା ଆମ୍ଭର ପ୍ରଜା-ମଣ୍ଡଳ କର୍ମୀମାନଙ୍କୁ ଖୁଆଇ ପିଆଇ ଟ୍ରେନ୍ ଭଡା ଓ ବସ ଭଡା ଦେଇ କୁଚିଣ୍ଡା ପଠାଇ ଦେଲେ ଓ ସେମାନଙ୍କୁ ଜୋରରେ ଆନ୍ଦୋଳନ ଚଳାଇବାକୁ ନିର୍ଦ୍ଦେଶ ଦେଲେ । ଆଘାତି କର୍ମୀମାନଙ୍କର ଯେଉଁ ଘରୋଇ ପରିଜନ ଯାଇଥିଲେ ସେମାନଙ୍କୁ ମଧ୍ୟ କଂଗ୍ରେସ ଅଫିସରେ ରହିବା ଖାଇବା ବ୍ୟବସ୍ଥା କଲେ ଓ ରୋଗୀମାନଙ୍କର ଖୁବ୍ ଭଲ ଯତ୍ନ ନେଲେ । ମୁଁ ତା ୧୩ । ୧୦ ରେ ଝାରସୁଗୁଡା ଯାଇ ସମସ୍ତଙ୍କୁ ସଂଖୁଳି ଆସିଲି ଓ ଏ ସମସ୍ତ ବିଷୟ ପତ୍ରାକାରରେ ସମ୍ବଲପୁର ଜିଲ୍ଲା କଂଗ୍ରେସ ସଂପାଦକ ମିତ୍ରଭାନୁ ପାଣିଗ୍ରାହୀ ଓ ସଭାପତି ଶ୍ରୀ ବିରେନ୍ ସରକାରଙ୍କୁ ରତ୍ନାକର ପଟେଲ ଜଣାଇଲେ । ସେମାନେ ମଧ୍ୟ ଝାରସୁଗୁଡା ଆସି ଆଘାତି କର୍ମୀମାନଙ୍କୁ ଦେଖି ସଂଖୁଳି ଗଲେ । ସେଦିନ ଏହି ଘଟଣା ସବୁ ଟେଲିଗ୍ରାମ ଯୋଗେ ଜଣାଇ ଦିଆଗଲା—

1. To Pandit Jawaharlal Nehru, Prime Minister
2. To the President all India Independent State People Federation
3. To Sardar Ballabh Bhai Patel, Home minister.
4. To Jayaprakash Narayan
5. To Sarangadhar Das
6. To the Governor Orissa
7. To the Premier Orissa
8. To the Students Federation Nayagarh
9. To the Dewan Deogarh

ଏହି ସମସ୍ତ ଟେଲିଗ୍ରାମ ବାମର ପୋଷ୍ଟ ଅଫିସରୁ ହେଲା ଓ ଏହାର ଖର୍ଚ୍ଚ ବାବଦକୁ ଟ. ୪୧.୦୦ (ଏକଚାଳିଶ ଟଙ୍କା) ଶ୍ରୀ ବୁଢରୟ ଗୌନ୍ତିଆ ସାଉନ୍ତମାଳ ବହନ କଲେ । ଗଭର୍ଣ୍ଣର ଓଡ଼ିଶାଙ୍କଠାରୁ ନିମ୍ନମତେ ପ୍ରାପ୍ତି-ସ୍ୱୀକାର ଆସିଲା ।

Office of the Governor, Orissa.

Government house Cuttack

The 14/16 Oct., 1947

Sri Ratnakar Patel, Secretary, Bamra Prajamandal

Dear Sir,

I am desired to acknowledge the receive your telegram dated the 13th Oct. 1947 to his Excellency and to say that it has been forwarded to the Chief Secretary to the Government of Orissa, for necessary action.

Yours faithfully

Sd/-

Secretary to the Governor, Orissa

ତା ୧୪ । ୧୦ । ୪୭ ମଃ ରେ ବିଭିନ୍ନ ସମ୍ବାଦପତ୍ର ମାନଙ୍କୁ ଏହି ସମ୍ବାଦ ପଠାଗଲା । ତା ୧୫/୧୬ । ୧୦ । ୪୭ ଅନେକ ପ୍ରଜାମଣ୍ଡଳ କର୍ମୀଙ୍କ ସହ ସାକ୍ଷାତ ଓ ଭବିଷ୍ୟତ କର୍ମପନ୍ଥା ନିମନ୍ତେ ମତାମତ ଗ୍ରହଣ ।

ତା ୧୭ । ୧୦ । ୪୭ ମଃ କୁଚିଣ୍ଡାରେ ରତ୍ନାକର ପଟେଲ, ଦିନବନ୍ଧୁ ଚୌଧୁରୀ, ଧରଣୀଧର ଗୌନ୍ତିଆ, ନୂଆଡହି, ଶଙ୍କାକର ପଟେଲ, ଶରତ-ଚନ୍ଦ୍ର ନାୟକ ପ୍ରଭୃତି ୧୫/୨୦ ଜଣ ବିଶିଷ୍ଟ ପ୍ରଜା ମଣ୍ଡଳକର୍ମୀ ପୂର୍ବ ନିର୍ଦ୍ଧାରିତ କାର୍ଯ୍ୟସୂଚୀ ଅନୁଯାୟୀ ଗୋଟିଏ ଘରେଇ ସଭରେ ଆମ୍ଭେ ବସିଥିବାବେଳେ ଶ୍ରୀ ମଦନ ମୋହନ ନାୟକ ଭେଡାବାହାଳ, ସୁନ୍ଦରଗଡଙ୍କ ସେଠାରେ ଆବିର୍ଭାବ ହେଲା । ସେ ଜଣେ ଅଗ୍ରୀଆ ସମାଜର ବିଶିଷ୍ଟ ବ୍ୟକ୍ତି । ସୁନ୍ଦରଗଡ ରାଜ୍ୟର କୋର୍ଟ ସବ୍‌ଇନ୍‌ସପେକ୍ଟରରୁ ତହସିଲଦାର ଓ ମୁନସିଫ ହୋଇ ଅବସର ପରେ ଓକିଲାତି କରୁଥାନ୍ତି । ସୁନ୍ଦରଗଡ ରାଜ୍ୟର ମଧ୍ୟ ସେଜଣେ ବିଶିଷ୍ଟ ବ୍ୟକ୍ତି । ଲେଖକର ତାଙ୍କ ସହିତ ଘରେଇ ସମ୍ବନ୍ଧ ଓ ଗୁରୁଜନ । ସେ ଆମ୍ଭ ସହିତ ବସିଗଲେ । ତାଙ୍କ ସହିତ ଘରେଇ, ସାମାଜିକ, ରାଜ-ନୈତିକ କଥୋପକଥନ ବେଶ ଘମାଘୋଟ ହେଲୁ । ସେ ରାଜାଙ୍କ ବିରୁଦ୍ଧରେ ଆନ୍ଦୋଳନ ନକରିବାକୁ ବୁଝାଇଲେ । ଅଧିକନ୍ତୁ ଆମ୍ଭେ ବୁଝି ପାରିଲୁ ଯେ ବାମଣ୍ଡା ଦରବାରଙ୍କ ସମ୍ମତି ନେଇ ବାମଣ୍ଡାର ରେଭିନ୍ୟୁ ମିନିଷ୍ଟର ବସନ୍ତ କୁମାର ବହିଦାର ଆମ୍ଭଙ୍କୁ ଯେପରି ବୁଝାଇବା ନିମନ୍ତେ ତାଙ୍କୁ ନିମନ୍ତ୍ରଣ କରି ଆଣିଥିଲେ । ତାଙ୍କୁ ବିଦାୟ ଦେଇ ପୁନଶ୍ଚ ଆମ୍ଭର ଆଲୋଚନା ହେଲା, ଅନ୍ୟାନ୍ୟ ସଂଗଠନାତ୍ମକ କାର୍ଯ୍ୟମଧ୍ୟରେ ଉକ୍ତ ବୈଠକର ନିଷ୍ପତ୍ତିକ୍ରମେ ବାମଣ୍ଡା ରାଜ୍ୟର ଭବିଷ୍ୟତ ଶାସନ ବିଷୟରେ ଆଲୋଚନା କରିବାକୁ ବାମଣ୍ଡା ରାଜାଙ୍କ ନିକଟକୁ ଖଣ୍ଡେ ପତ୍ର ଓ ଦେବଗଡ ସ.ଡ. କୁ ପ୍ରବେଶ କରିବାକୁ ବାରଣ କରି ଲେଖକଙ୍କ ଉପରେ ଜାରି କରିଥିବା ୧୪୪ ଉଠାଇ ନେବାକୁ ଆଉଖଣ୍ଡେ ପତ୍ର ଏସ୍.ଡ଼.ଏମ୍. ଦେବଗଡ ନିକଟକୁ ଲେଖି ତା ୧୮ । ୧୦ । ୪୭ ମଃରେ ଡାକ ଯୋଗେ ପଠାଇଲି ।

ତା ୧୯ । ୧୦ । ୪୭ ମଃ ରେ ପାରୁଆପଢ ଯାଇ ତିଲେଇବଣୀ ଠାରେ ମାଡ ଖାଇ ଝାରସୁଗୁଡାରେ ଚିକିତ୍ସିତ ହେଉଥିବା କର୍ମୀ ପୂର୍ଣ୍ଣଚନ୍ଦ୍ର ବାଘ, ହ୍ଲାଲ ଚୌଧୁରୀ, ମଦନ ପଟେଲ, ଦାଶରଥି ପଟେଲଙ୍କ ଘରକୁ ଯାଇ ତାଙ୍କ ଛୁଆପିଲାକୁ ସଂଖୁଳି ଆସିଲି ।

ତା ୨୦ । ୧୦ । ୪୭ ମଃରେ ଗୁଡୁଗ ଗଲୁଁ ରତ୍ନାକର ପଟେଲଙ୍କ ସାଙ୍ଗରେ, ସଙ୍ଗରେ ଥାଆନ୍ତି ଦୁର୍ଯ୍ୟୋଧନ ସେଉ ଉଲୁଣ୍ଡା । ସେଠାରେ ଦିନବନ୍ଧୁ ଦେବଙ୍କ ସହିତ ଆମ୍ଭର ପ୍ରଜାମଣ୍ଡଳ ଆନ୍ଦୋଳନ ବିଷୟରେ ଆଲୋଚନା କଲୁଁ । (ଦିନବନ୍ଧୁ ଦେବଙ୍କ ପିଉସା ହେଉଛନ୍ତି ଜଳନ୍ଧର ଦେବ, ତାଙ୍କ ପୁତ୍ର ହର ପ୍ରସାଦ ଦେବ ତତ୍କାଳୀନ ବାମଣ୍ଡାର Development minister । ଏପରି ରଜାଙ୍କର ସହିତ ମଧ୍ୟ ଦିନବନ୍ଧୁଙ୍କର ବନ୍ଧୁବାନ୍ଧବ ସଂପର୍କ । ଏଣୁ ଏ ଜଣେ ବାମଣ୍ଡାର ପ୍ରଭବ ଶାଳୀ ବ୍ୟକ୍ତି ଓ ପ୍ରଜା ସପକ୍ଷବାଦୀ) ଆଲୋଚନା ପରେ ପ୍ରଜାମଣ୍ଡଳ ପ୍ରତି ତାଙ୍କର ସମର୍ଥନ ଥିବା ସେ ସ୍ୱୀକାର କଲେ । ଗୁଡୁଗରେ ରହି ପ୍ରଜାମଣ୍ଡଳ ସଂଗଠନ କାର୍ଯ୍ୟ କଲୁଁ ।

ତା ୨୧ । ୧୦ । ୪୭ ମଃ ଗୁଡୁଗରୁ ଅନ୍ଧାରିପାଲି ହୋଇ ବଲଣ୍ଡା ଗଲୁଁ ରତ୍ନାକର ପଟେଲଙ୍କ ସହିତ । ସେ ସ୍ଥାନର ଜମିଦାର ଅଭିମନ୍ୟୁ ସିଂ ମହାପାତ୍ରଙ୍କ ସହ କଥାବାର୍ତ୍ତା ହେବାରୁ ସେ ଆମର ପ୍ରଜାମଣ୍ଡଳ କାର୍ଯ୍ୟକଳାପକୁ ବହୁତ ପ୍ରଶଂସା କଲେ ଓ ପ୍ରଜାମଣ୍ଡଳରେ ଯୋଗ ଦେବାକୁ ସ୍ୱୀକାର କଲେ ଓ ଚରିଅଣିଆ ସଭ୍ୟ ହେଲେ । ସୌଭାଗ୍ୟବଶତଃ ସେଦିନ ତାଙ୍କ ଘରକୁ କୁଣିଆ ଆସିଥାନ୍ତି ବଣାଇ ରାଜ୍ୟ ପ୍ରଜାମଣ୍ଡଳ ନେତା ଶ୍ରୀ ନରହରି ଦଣ୍ଡପାଟ । ତାଙ୍କ ସହିତ କଥାବାର୍ତ୍ତା ହେଲୁଁ । ସେ ଆମ୍ଭର ଶାନ୍ତିପୂର୍ଣ୍ଣ ତଥା ଅଗ୍ରଗାମୀ ଆନ୍ଦୋଳନର ଖବର ରଖିଥାନ୍ତି । ସେ ତାଙ୍କର ଆନ୍ଦୋଳନକୁ କିପରି ସମଗ୍ର ବଣାଇ ରାଜ୍ୟରେ ବିସ୍ତାର କରିପାରିବେ ସେ ବିଷୟରେ ଆମ୍ଭର ପରାମର୍ଶ ନେଉଥିଲେ ଓ ଆମ୍ଭେ ବୁଝାଇଲୁଁ । ବାମଣ୍ଡା ଓ ବଣାଇ ପ୍ରଜାମଣ୍ଡଳ ଦ୍ୱୟ ପରସ୍ପରକୁ ସାହାଯ୍ୟ କରି କାମକରିବା ସ୍ଥିର ହେଲା । ରାତ୍ରରେ ବେଲମୁଣ୍ଡା ଗ୍ରାମରେ ରହିଲୁଁ । ଏଠାରେ ପ୍ରଥମ ପ୍ରଜାମଣ୍ଡଳ ଗଠନ କରିଥିବା ସଭ୍ୟ ଶ୍ରୀ ଉଦେଚନ୍ଦ୍ର ଚୌଧୁରୀଙ୍କ ଘର ଗ୍ରାମର ପ୍ରାୟ ସମସ୍ତ ବ୍ୟକ୍ତିଙ୍କ ଉପସ୍ଥିତିରେ ତାଙ୍କ ଘରେ ଗୋଟିଏ ସଭା ହେଲା । ପ୍ରଜାମଣ୍ଡଳକୁ ଗୋଟିଏ ଶକ୍ତିଶାଳୀ ସଂଗଠନ କରିବାକୁ ତାଙ୍କୁ ବୁଝାଇଲୁଁ । ସେମାନେ ସମସ୍ତେ ତନ ମନ ଧନ ଦେଇ ପ୍ରଜାମଣ୍ଡଳ କାର୍ଯ୍ୟ କରିବାକୁ ଶପଥ ନେଲେ ।

ତା ୨୨ । ୧୦ । ୪୭ ମଃ ବେଲମୁଣ୍ଡାର ଆମ୍ଭ ଯୁବକକର୍ମୀମାନେ ଆମ୍ଭ ସହିତ କେଶାଇବାହାଲ ପର୍ଯ୍ୟନ୍ତ ଆସିଲେ । ସେଠାରୁ ରତ୍ନାକର

ପଟେଲଲ ଗୁଡିଦପୁର ଗଲେ ଓ ମୁଁ ବସ୍‌ରେ କୁଚିଣ୍ଡା ଆସିଲି । କୁଚିଣ୍ଡାରେ ସୁରେନ୍ଦ୍ର ନାଥ ଶର୍ମାଙ୍କ ସହ କଥାବର୍ତ୍ତା ହେଲୁଁ । ମୁଁ ଆମ୍ଭର ସମସ୍ତ କାର୍ଯ୍ୟ-କଳାପ ତାଙ୍କଠାରେ ଫିଟାଇ କହିଲି । ସେ ସେତେବେଳେ କଳାହାଣ୍ଡି ରାଜ୍ୟରେ ମାଜିଷ୍ଟ୍ରେଟ କାର୍ଯ୍ୟ କରୁଥିଲେ ଦଶହରା ଛୁଟିରେ ତାଙ୍କ ଘର କୁଚିଣ୍ଡାକୁ ଆସିଥିଲେ ।

ବଲାଙ୍ଗିର ସତ୍ୟାଗ୍ରହ ହେବା ପୂର୍ବରୁ ଆଠମଲ୍ଲିକ ଠାରେ ଓଡ଼ିଶା ଗଡ଼ଜାତ ପ୍ରଜାମଣ୍ଡଳ ମାନଙ୍କର ମଧ୍ୟ ଗୋଟିଏ ସମ୍ମିଳନୀ ହୋଇଯାଇଥିଲା । ଉକ୍ତ ସମ୍ମିଳନୀକୁ ଦିନବନ୍ଧୁ ଚୌଧୁରୀଙ୍କ ନେତୃତ୍ୱରେ ଆମ୍ଭ ପ୍ରଜାମଣ୍ଡଳର କେତେକ ପ୍ରତିନିଧି ଯୋଗ ଦେଇଥିଲେ । ଉକ୍ତ ସଭାରେ ସଭାପତିତ୍ୱ କରିଥିଲେ ଶ୍ରୀ ହରେକୃଷ୍ଣ ମହତାବ ଓ ଅହିଂସା ମାର୍ଗରେ ପ୍ରତ୍ୟେକ ଗଡ଼-ଜାତରେ ପ୍ରଜା ଆନ୍ଦୋଳନ କରିବାକୁ କର୍ମୀମାନଙ୍କୁ ପ୍ରେରଣା ଦେଇଥିଲେ ।

ତା ୨୪ । ୧୦ । ୪୭ କୁଚିଣ୍ଡା ଦଶରା ପୂଜା ଉତ୍ସବ । ଏହି ଦିନ କୁଚିଣ୍ଡାରେ ଏ ଅଞ୍ଚଳର ଗୋଟିଏ ବଡ଼ ଯାତ୍ରା ହୁଏ । ମୁଁ ଶ୍ରୀ ଶର୍ମାଙ୍କ ଘରକୁ ସାକ୍ଷାତ ନିମନ୍ତେ ଗଲି । ଏ ଅଞ୍ଚଳର ବହୁତ ବିଶିଷ୍ଟ ବ୍ୟକ୍ତି ମଧ୍ୟ ତାଙ୍କ ସହିତ ସାକ୍ଷାତ ନିମନ୍ତେ ଆସିଥାନ୍ତି । ସେଠାରେ ଆମ୍ଭର ପ୍ରଜାମଣ୍ଡଳ ବିଷୟ ନେଇ ତାଙ୍କ ସହିତ ଘମାଘୋଟ ଆଲୋଚନା ହେଲା । ଆଲୋଚନା ପରେ ରାଜାଙ୍କ ସହ ସାକ୍ଷାତ ହୋଇ ଗୋଟିଏ ଶାନ୍ତିସନାମା କରିବାକୁ ସେ ଉପଦେଶ ଦେଲେ । ମୁଁ ରାଜାଙ୍କ ନିକଟକୁ ସେଥିନିମନ୍ତେ ପତ୍ର ଲେଖିଥିବା କହିଲି । ତାଙ୍କ ଠାରୁ ଉତ୍ତର ଆସିଲେ ଆମ୍ଭ କାର୍ଯ୍ୟକାରୀ କମିଟୀରେ ଉକ୍ତ ବିଷୟରେ ଆଲୋଚନା ପରେ ୪/୫ ଜଣ ପ୍ରତିନିଧି ଯାଇ ତାଙ୍କ ସଙ୍ଗେ କଥାବାର୍ତ୍ତା କରିବାକୁ ଠିକ ହେଲେ ।

ତା ୨୫ । ୧୦ । ୪୭ ମଝି କଂଶର ପ୍ରଗଣାରୁ ରମେଶ୍ୱର ପଟେଲ ଓ ଉଦେକର ପଟେଲଙ୍କ ନେତୃତ୍ୱରେ ଆଉ ୨/୩ ଜଣ ଆଦିବାସୀ ଓ ହରିଜନ କର୍ମୀ ମୋ ନିକଟକୁ ଆସିଲେ । ମୋ ଘରେ ସେମାନଙ୍କର ଉପଯୁକ୍ତ ସତ୍କାର କରିବା ସଙ୍ଗେ ସଙ୍ଗେ ଆମ୍ଭର ଏ ଅଞ୍ଚଳରେ ହେଉଥିବା ପ୍ରଜାମଣ୍ଡଳର କାର୍ଯ୍ୟକଳାପ ବିଷୟରେ ଶୁଣାଇ ସେମାନଙ୍କ ସଂଗଠନ ମଧ୍ୟ ଦୃଢ଼ ରଖିବା ନିମନ୍ତେ ସତର୍କ କରିଦେଇ ଅନେକ ଗୁଡ଼ିଏ ପ୍ରାଥମିକ ସଭ୍ୟ ସଂଗ୍ରହ ଖାତା, ପ୍ରଚାର ପତ୍ର ଓ ସମସ୍ତଙ୍କୁ ଖଣ୍ଡେ ଲେଖାଏଁ ଗାନ୍ଧିଟୁପି

ପିନ୍ଧାଇ ଦେଇ ପାରୁଥିଲୁ ସେ ନିଜକୁ ବଡ ଗୌରବାନ୍ୱିତ ମନେ କରୁଥିଲେ ଓ ପ୍ରଜାମଣ୍ଡଳର ସଂଗଠନ କାର୍ଯ୍ୟରେ ତନ ମନ ଧନ ଦେଇ ଅହିଂସା ମାର୍ଗରେ ମହାତ୍ମାଙ୍କ ରଚନାତ୍ମକ କାର୍ଯ୍ୟକ୍ରମ ଓ ଏକାଦଶ ବ୍ରତରୁ ମଧ୍ୟ ଅନେକ ନିୟମ ପାଳନ କରୁଥିଲେ ।

ବଲାଙ୍ଗିର ରାଜ୍ୟ ପ୍ରଜା ସଂଗଠନର ନାମ 'ପ୍ରଜାଦଳ' ଥିଲା । କପିଳ ପ୍ରସାଦ ନନ୍ଦଙ୍କ ନେତୃତ୍ୱରେ ସେମାନେ ଲୋକ ପ୍ରତିନିଧି ଶାସନ ହାସଲ କରିଥିଲେ । ୧୯୪୬ ମସିହା ଦଶରା ବିଜୟାଦଶମୀ ଦିନ ସେମାନଙ୍କ ଶାସନର ଏକ ବର୍ଷ ପୂର୍ତ୍ତି ଉପଲକ୍ଷେ ଓଡ଼ିଶା ଗଡଜାତମାନଙ୍କ ସମସ୍ତ ପ୍ରଜାମଣ୍ଡଳ ମାନଙ୍କୁ ଓ ମୋଗଲ୍ ବନ୍ଦ କଂଗ୍ରେସ ନେତାମାନଙ୍କୁ ନିମନ୍ତ୍ରଣ କରିଥିଲେ । ଏହି ସମ୍ମିଳନୀକୁ ବାମଣ୍ଡାରୁ ଆମ୍ଭେ ଅନେକଗୁଡ଼ଏ କର୍ମୀ — ରତ୍ନାକର ପଟେଲ୍, ବୃନ୍ଦାବନ ଗୌନ୍ତିଆ, ଧରଣୀଧର (ନୂଆଡ଼ିହି), ଶରତ ଚନ୍ଦ୍ର ନାୟକ ପ୍ରଭୃତି ଯାଇଥିଲୁଁ । ସମ୍ବଲପୁରରେ ଦୟାନନ୍ଦ ଶତପଥୀ ଓ ତାଙ୍କର ଦଳ ସହ ଭେଟ ହୋଇ ସମସ୍ତେ ପାର୍ଟିସ ବସ ଯୋଗେ ତା ୨୭-୧୦ ୪୬ ମସିହା ସନ୍ଧ୍ୟା ୭ଟାରେ ବଲାଙ୍ଗିରରେ ପହଞ୍ଚିଲୁଁ । ସେଠାରେ ଆମ୍ଭର ରହିବା ଓ ଖାଇବାର ବନ୍ଦୋବସ୍ତ ହୋଇଥାଏ । ତା ୨୮ । ୧୦ ସକାଳୁ ବଡ ଆନନ୍ଦ ଓ ଉତ୍ସାହର ସହିତ ପ୍ରଭାତ ଫେରି ହେଲା । ସ୍ନାନ ଓ ଜଳ-ଯୋଗ ପରେ ପତାକା ଉତ୍ତୋଳନ ପରେ ସାଧାରଣ ସଭକୁ ସୁରେନ୍ଦ୍ର ନାଥ ଦ୍ୱିବେଦୀ ଉଦ୍‌ଘାଟନ କଲେ । କପିଳ ପ୍ରସାଦ ନନ୍ଦଙ୍କ ସଭାପତିତ୍ୱରେ ସଭା-କାର୍ଯ୍ୟ ଚାଲିଲା । ସାରଙ୍ଗଧର ଦାସ, ମାଳତୀ ଚୌଧୁରୀ, ଲକ୍ଷ୍ମୀନାରାୟଣ ସାହୁ ପ୍ରଭୃତି ସାମ୍ୟବାଦ ନୀତିରେ ମର୍ମସ୍ପର୍ଶୀ ଭାଷଣମାନ ଦେଲେ । ବିରେନ୍ ସରକାର ମାଳତୀ ଚୌଧୁରୀଙ୍କ ନିର୍ଦ୍ଦେଶରେ ସୁବାସ ବୋଷଙ୍କ "ଚଲୋ ଚଲୋ ଭାଇ ଦିଲ୍ଲୀ ଚଲେ" ବଡ ବୀରତ୍ୱପୂର୍ଣ୍ଣ ଠାଣିରେ ଗାନ କରିଥିଲେ ଓ ଗାନଟି ସମସ୍ତଙ୍କର ହୃଦୟସ୍ପର୍ଶୀ ହୋଇଥିଲା ।

ତା ୩୦ । ୧୦ ସକାଳୁ ବଲାଙ୍ଗିରରୁ ରାୟଗଡ ଅଭିମୁଖେ ବାହାରିଲୁଁ । ସେଠାରେ ମଧ୍ୟପ୍ରଦେଶ, ବିହାର ଓ ଓଡ଼ିଶା ଗଡଜାତ ସମୂହର Regional Council ର ବୈଠକ ବସିଲା । ରାଜାମାନେ ସମସ୍ତେ ମିଳିତ ଭାବେ (ଏହି ତିନି ପ୍ରଦେଶର) ଗୋଟିଏ Federation ଗଠନ କରି ରାୟଗଡରେ ଗୋଟିଏ ହାଇକୋର୍ଟ ରଖି ନିଜ ନିଜ ରାଜ୍ୟରେ ସାର୍ବଭୌମ କ୍ଷମତା ଖଟାଇ ଶାସନ କରିବା ପ୍ରସ୍ତାବ କରୁଥାନ୍ତି । ଏପରି ପରିସ୍ଥିତିରେ

ପ୍ରଜାମାନଙ୍କର ମଧ୍ୟ ଗୋଟିଏ ସଂଗଠନ ସେହିପରି ରଖିବାର ଆବଶ୍ୟକତା ଅନୁଭବ କଲୁଁ ଓ ଏହି ସଭରେ ଏକତ୍ରିତ ହୋଇଥିଲୁଁ । ସଭକାର୍ଯ୍ୟ ସକାଳ ୮ଟାରୁ ଆରମ୍ଭ ହେଲା । ମଧ୍ୟପ୍ରଦେଶ ଗଡଜାତ ସମୂହର ପ୍ରତିନିଧି B. N. Roy, Rajnandgan ଓ ଓଡ଼ଶା ଗଡଜାତ ସମୂହର ପ୍ରତିନିଧି ରାଧାନାଥ ରଥ, ଆଠଗଡଙ୍କ ମଧ୍ୟରେ ବିଶେଷ ବାଦାନୁବାଦ ହୋଇ ସନ୍ଧ୍ୟାରେ ସଭ କାର୍ଯ୍ୟ ଶେଷ ହେଲା ଓ ସର୍ବ ସମ୍ମତି କ୍ରମେ ଗୋଟିଏ ମୀମାଂସାରେ ପହଞ୍ଚିଲୁ - Regional Council ଗଠନ ବିଷୟକ ପ୍ରସ୍ତାବରେ ।

ତା ୧ । ୧୧ । ଓ ତା ୨ । ୧୧ ଦୁଇଦିନ ଧରି ରାୟଗଡ ରାଜ୍ୟ କଂଗ୍ରେସର ବୈଠକ ବସିଲା । ରାୟଗଡ ଗଡଜାତ ପ୍ରଜାମାନେ ତାଙ୍କ ସଂଗଠନକୁ ପ୍ରଜାମଣ୍ଡଳ ନାମ କରଣ ନ କରି କଂଗ୍ରେସ ଆଖ୍ୟା ଦେଇ-ଥିଲେ । ଉକ୍ତ ଦୁଇଦିନ ସଭରେ ସେ ଅଞ୍ଚଳର ନେତାମାନେ ଜ୍ୱଳାମୟୀ ଭଷଣମାନ ଦେଲେ ।

ତା ୩ । ୧୧ ଦିନ ଗଡଜାତ ସମୂହର ହାଇକୋର୍ଟକୁ ଯାଇ ଡଭିଜନ ବେଞ୍ଚରେ ଦାଶରଥି ମିଶ୍ରଙ୍କ ମକଦମା ଶୁଣାଣି ନିମନ୍ତେ ତା ୩ । ୧୨ । ମ. କୁ ଦେଶୀ ଥିବାର ଜାଣିବାକୁ ପାଇଲି । G.S. Guru ନାମକ ଜଣେ ହାଇକୋର୍ଟ ଉକିଲଙ୍କ ସହ କଥାବାର୍ତ୍ତା ଉକ୍ତ ମକଦମା ବିଷୟରେ କରି ସନ୍ଧ୍ୟାରେ ଗୃହାଭିମୁଖେ ଫେରିଲି ।

ତା ୪ । ୧୧ ରେ ଗୋବିନ୍ଦପୁରରେ ବୈଦ୍ୟନାଥ ଲଠ, ଭବାନି ଚରଣ ପାଲ ଓ ଅନ୍ୟାନ୍ୟ ଆମର ପ୍ରଜାମଣ୍ଡଳ କର୍ମୀମାନଙ୍କୁ ବଲାଙ୍ଗିର ଓ ରାୟଗଡ ସଭ ମାନଙ୍କର ସଂକ୍ଷିପ୍ତ ବିବରଣୀ ଶୁଣାଇଲି । ଦାଶରଥି ମିଶ୍ରଙ୍କ ମକଦମା କିପରି ଲଢିବାକୁ ହେବ ସେ ବିଷୟରେ ମଧ୍ୟ ତାଙ୍କ ସହିତ ପରାମର୍ଶ କଲି । ତା ୫ । ୧୧ ରେ କୁଚିଣ୍ଡାରେ ରହି ଉପରୋକ୍ତ ବିଷୟମାନ କୁଚିଣ୍ଡାକର୍ମୀଙ୍କୁ ମଧ୍ୟ ଶୁଣାଇଲି । ସନ୍ଧ୍ୟାରେ ସୁରେନ୍ଦ୍ରନାଥ ଶର୍ମାଙ୍କ ସହ ବାମଣ୍ଡା ରାଜ୍ୟର ଦାୟିତ୍ୱମୂଳକ ଶାସନ ବିଷୟରେ ଆଲୋଚନା ହେଲା । ତା ୬ । ୧୧ ରେ ବାମଣ୍ଡା ଦେୱାନ, ଶର୍ମା ଓ ମୁଁ ରାଣୀ ଉଦ୍ୟାନ କୁଚିଣ୍ଡାରେ ବସି ଆଲୋଚନା କଲୁଁ । ତା ୭ । ୧୧ ରେ ପୁନଶ୍ଚ ଦେୱାନଙ୍କ

ସଙ୍ଗେ କଥାବାର୍ତ୍ତା ହୋଇ ଘରକୁ ଫେରିଲି ଓ ବିଶ୍ରାମ ନେଲି । ଦେଓ୍ୱାନ ସାହେବ ପ୍ରଜାମଣ୍ଡଳ ଆନ୍ଦୋଳନର ଗତିବିଧି ନିର୍ଣ୍ଣୟ କରିବା ନିମନ୍ତେ କୁଚିଣ୍ଡାରେ ରହୁଥାନ୍ତି । ତା ୮।୧୧ ସନ୍ଧ୍ୟାରେ ପୁନର୍ବାର ତାଙ୍କ ନିମନ୍ତ୍ରଣ କ୍ରମେ କୁଚିଣ୍ଡାରେ ସାକ୍ଷାତ ହୋଇ ନିଷ୍ପତ୍ତି ହେଲା ଯେ, ତା ୧୨।୧୧ ରେ ଦେବଗଡଠାରେ ପ୍ରଜାମଣ୍ଡଳର ପ୍ରତିନିଧିମାନେ ରାଜାଙ୍କ ସହିତ ଆଲୋଚନା କରିବେ । ତା ୯ । ୧୧ । ୪୭ ମଃ ସକାଳୁ କୁଚିଣ୍ଡାରୁ ଘରକୁ ଆସିଲି । ସନ୍ଧ୍ୟାରେ ମୋ ଗ୍ରାମର କର୍ମୀ ଓ ଶାନ୍ତି ସେନାଙ୍କୁ ଏକତ୍ରିତ କରି— ବଲାଙ୍ଗିର ଓ ରାୟଗଡ ସଭା, ହାଇକୋର୍ଟ ମକଦ୍ଦମା ଦେଓ୍ୱାନଙ୍କ ସହ ହୋଇଥିବା କଥାବାର୍ତ୍ତା ତା ୧୨/୧୧ ରେ ରାଜାଙ୍କ ସହିତ ହେବାକୁ ଯାଉଥିବା ଆଲୋଚନା ବିଷୟ ଭଲଭାବେ ବୁଝାଇ ଯେ କୌଣସି ପରିସ୍ଥିତି ନିମନ୍ତେ ଜାଗ୍ରତ ରହିବାକୁ ସଚେତନ କରାଇଦେଲି ।

ତା ୧୦।୧୧ ରେ ସାତକମା ଶାନ୍ତି ସେନାଙ୍କର ଝଣ୍ଡା ଉତ୍ତୋଳନ କରି "ଝଣ୍ଡା ଉଁଚା ରହେ ହମାରା ବିଶ୍ୱବିଜୟୀ ତ୍ରିରଙ୍ଗା ପ୍ୟାରା" ଗାନ ହେଲା । ନାନାଦି ନାଦ ଦ୍ୱାରା ଗଗନ ପବନ ପ୍ରକମ୍ପିତ କରି ସମସ୍ତେ ଗାନ୍ଧି ଟୋପି ପରିଧାନ ପୂର୍ବକ ଠେଙ୍ଗାଧରି ବିଗୁଲ ଫୁଙ୍କି ଫୁଙ୍କି ଗ୍ରାମରେ ମାର୍ଚ୍ଚିଂ ହେଲା ।

ଗତ ଅକ୍ଟୋବର ମାସଠାରୁ ଏହିପରି ମାର୍ଚ୍ଚିଂ ପାରୁଆବଡ, ହାଡପାଲି ଖଣ୍ଡୋକଟା, ରମତିଲେଇମାଳ, ଉଲୁଣ୍ଡା, ଗୁବିନ୍ଦପୁର ପ୍ରଭୃତି ଗ୍ରାମମାନଙ୍କରେ ବରାବର ହେଉଥାଏ ଓ ଅନ୍ୟାନ୍ୟ ଗ୍ରାମ ମାନଙ୍କୁ ମଧ୍ୟ ପ୍ରସାରିତ ହେଉଥାଏ ଓ ବାମଣ୍ଡା ରାଜ ଦରବାରରେ ହୃତ୍‌କମ୍ପ ହେଉଥାଏ ।

ସେଦିନ କଂସର ପାଲୁଣିପୁଡା ତରଫରୁ ପତ୍ର ମିଳିଲା ଯେ, ରିଆମାଳଠାରେ ସେ ଅଞ୍ଚଳର ସନ ୧୯୩୮ ମଃ ରେ ଜେଲ୍ ଯାଇଥିବା ପୁରାତନ କର୍ମୀମାନେ ଗୋଟିଏ ବଡ ସଭା କରୁଛନ୍ତି ଓ ଆମ୍ଭମାନଙ୍କୁ ଉକ୍ତ ସଭାରେ ଯୋଗଦାନ କରିବାକୁ ନିମନ୍ତ୍ରଣ କରିଥାନ୍ତି । କୁଚିଣ୍ଡାକୁ ଯାଇ ରତ୍ନାକର ପଟେଲଙ୍କ ନେତୃତ୍ୱରେ ଶରତ ଚନ୍ଦ୍ର ନାୟକ, ପାରୁଆବଡ, ଦୁର୍ଗାଚରଣ ନାୟକ, ସୁରେଶ ଚନ୍ଦ୍ର ନାୟକ, ଶ୍ରୁତିଧର ନାୟକ, ହାଡପାଲି ନାରାୟଣ ଚନ୍ଦ୍ର ନାୟକ, ଲଖୋପଡା ପ୍ରଭୃତିଙ୍କୁ ରିଆମାଳ ଯିବାର ସ୍ଥିର କଲୁଁ । ଅନ୍ୟାନ୍ୟ କର୍ମୀମାନଙ୍କ ସହ ସେଦିନ ସ୍ଥିର କଲୁଁ ଯେ ରାଜାଙ୍କ ଠାରୁ ଲିଖିତ ନିମନ୍ତ୍ରଣ ନଆସିଲେ ଦେବଗଡ ଯାଇ ତାଙ୍କଠାରେ ଆଲୋଚନା କରିବୁଁ ନାହିଁ । ଏହା ସ.ଡ.ଅ. କୁଚିଣ୍ଡାକୁ ଜଣାଇ ଦେଲୁଁ ।

ତା ୧୧ । ୧୧ । ୪୭ ମଃ ରାତି ୮ଟା ବେଳେ ରାଜାଙ୍କ ଠାରୁ ମୋ ନିକଟକୁ ନିମନ୍ତ୍ରଣ ଆସିଲା ତାର ଖଣ୍ଡେ ନକଲ ଶ୍ରଦ୍ଧାକର ପଟେଲ, କୁଚିଣ୍ଡା ଅଫିସ ସମ୍ପାଦକଙ୍କ ନିକଟକୁ ପଠାଇଦେଲି ଓ ଯେଉଁମାନେ ତା ୧୨।୧୧ରେ ଦେବଗଡ ଯାଇ ରାଜାଙ୍କ ସଙ୍ଗେ ଆଲୋଚନା କରିବେ ସେମାନଙ୍କର ନାମ ଦେଇ ସେମାନଙ୍କୁ ଜଣାଇ ଦେବାକୁ ଅନୁରୋଧ କଲି । ସେ ଜଣାଇଲେ, କିନ୍ତୁ ତା ୧୨।୧୧ ଦିନ ମୁଁ ଯେତେବେଳେ ଦେବଗଡ ଯିବାକୁ କୁଚିଣ୍ଡା ଗଲି କୁଚିଣ୍ଡାରେ କୌଣସି କର୍ମୀଙ୍କୁ ଭେଟିଲି ନାହିଁ । ଏଣୁ ରାଜାଙ୍କ ନିକଟକୁ ଖଣ୍ଡେ ପତ୍ର ଲେଖି ଏସ୍.ଡି.ଓ. କୁଚିଣ୍ଡା ଜରିଏ ପଠାଇଲି । ଯାହାକି ଏସ୍.ଡି.ଓ. କୁଚିଣ୍ଡା ସଙ୍ଗେ ସଙ୍ଗେ ଫୋନ୍ ଯୋଗେ ଦେଓ୍ବାନ ଦେବଗଡଙ୍କୁ ଜଣାଇଦେଲେ । ଏହି ଦିନ କୁଚିଣ୍ଡାରେ ଜାଣିବାକୁ ପାଇଲି ଯେ, Regional Council ବୈଠକ ବାଲେଶ୍ୱରରେ ବସିବ । ତା ୧୩।୧୧ରେ ମୁଁ ବାଲେଶ୍ୱର ଅଭିମୁଖେ ବାହାରିଲି । ତା ୧୪ । ୧୧ । ୪୭ ମଃ ଭୋର ୩ଟା ସମୟରେ ଖଡଗପୁର ଠାରେ ଟ୍ରେନ୍‌ରୁ ଓହ୍ଲାଇ ସେଠାରେ ଆମ୍ଭର ସୁନ୍ଦରଗଡ ପ୍ରତିନିଧି ଶ୍ରୀ ଧନଞ୍ଜୟ ମହାନ୍ତି, ମଧ୍ୟପ୍ରଦେଶ ରାଜନନ୍ଦ ଗାଁ ରାଜ୍ୟ ପ୍ରତିନିଧି ବି. ଏନ୍. ରାୟ, ଜୋବିଆ ରାଜ୍ୟ ପ୍ରତିନିଧି ମାଲବିୟଜି ପ୍ରଭୃତିଙ୍କ ସହ ସାକ୍ଷାତ ହେଲା । ଆସାନସୋଲ ପୁରୀ ଟ୍ରେନ୍‌ରେ ଖଡଗପୁର ଠାରେ ସମସ୍ତେ ଗୋଟିଏ ଡବାରେ ବସି ନିଜ ନିଜ ରାଜ୍ୟରେ ଲାଗିଥିବା ଆନ୍ଦୋଳନ ବିଷୟ ଅନ୍ୟେ ବହୁତେ ଶୁଣାଶୁଣି ହେଲୁଁ । ମୋ କଥା ବିଶେଷ କରି ତିଳାଇବଣୀ କଥା ଶୁଣି ମଧ୍ୟପ୍ରଦେଶ ବନ୍ଧୁମାନେ "ଆପକେ ରିହାସତ୍ କୋ ହମ୍ କୋ ବୁଲାଓ ଭଇ" ବୋଲି କହିଲେ । ମୁଁ ଏକମାସ ପରେ ତାଙ୍କୁ ଭେଟିବାର ପ୍ରତିଶ୍ରୁତି ଦେଲି । ଏହିପରି କଥାବାର୍ତ୍ତା ହେଉଁ ହେଉଁ ଅପରାହ୍ନ ୨ଟାରେ ବାଲେଶ୍ୱର ପହଞ୍ଚିଲୁ । ସେଠାରେ କଂଗ୍ରେସ ଅଫିସରେ ଯାଇ ରହିଲୁ । ସନ୍ଧ୍ୟାରେ ସଭାକାର୍ଯ୍ୟ ଆରମ୍ଭ ହେଲା । ଓଡ଼ିଶାର ମୁଖ୍ୟମନ୍ତ୍ରୀ ମାନ୍ୟବର ନବକୃଷ୍ଣ ଚୌଧୁରୀ, ସାରଙ୍ଗଧର ଦାସ, ପବିତ୍ରମୋହନ ପ୍ରଧାନ, ରାଧାନାଥ ରଥ, କୈଳାସ ମହାନ୍ତି ଓ ଓଡ଼ିଶା ଗଡଜାତ ମାନଙ୍କର ଅନ୍ୟାନ୍ୟ ପ୍ରତିନିଧିମାନେ, ଉକ୍ତ ସଭାରେ ଉପସ୍ଥିତ ଥିଲେ । ତା ୧୫।୧୧ ସକାଳେ Regional Council Working Committee ର ବୈଠକ ବସିଲା । ବହୁତ ଗୁଡ଼ିଏ ପ୍ରସ୍ତାବ ପାସ୍ ହେଲା । ମୁଖ୍ୟ ପ୍ରସ୍ତାବ— ଗଡଜାତ ରାଜା-ମାନେ ଦାୟିତ୍ୱ ମୂଳକ ଶାସନ ପ୍ରଜାମାନଙ୍କୁ ହସ୍ତାନ୍ତର କରି ବିଲାତର ରାଜା ପରି ସେମାନେ ପୌତ୍ତଳିକ ମୁଖ୍ୟ ହୋଇ ରହନ୍ତୁ । ଲେଖକ ମଧ୍ୟ ଉକ୍ତ କମିଟିର ଜଣେ ସଭ୍ୟ ଥିଲେ ।

ଏହି ଦିନ ଅପରହ୍ନରେ ଆମ୍ଭେ ୩୦।୪୦ ଜଣ ନୀଳଗିରି ରାଜ୍ୟ ପ୍ରଜା-ପ୍ରଜାମଣ୍ଡଳ ସଭାପତି କୈଳାସ ମାହାନ୍ତିଙ୍କ ନେତୃତ୍ୱରେ ବାଲେଶ୍ୱରରୁ ନୀଳଗିରି ରାଜ୍ୟକୁ ପ୍ରବେଶ କରି ଅଯୋଧ୍ୟା ଗ୍ରାମ ପର୍ଯ୍ୟନ୍ତ ଗଲୁଁ । ଉକ୍ତ ଗ୍ରାମ ରାଜଦଳାଲ ଆଦିବାସୀଙ୍କ ଦ୍ୱାରା ପୋଡିଦିଆ ଯାଇଛି ଓ ସେମାନେ ଗ୍ରାମବାସୀଙ୍କ ଧନ ସମ୍ପତ୍ତି ମଧ୍ୟ ଲୁଟି ନେଇଛନ୍ତି । ଦଳେ ମିଲିଟେରୀ ପୁଲିସ ଗ୍ରାମକୁ ଜଗି ରହିଥାନ୍ତି । ନିକଟବର୍ତ୍ତୀ ଗ୍ରାମ ସବୁର ସେହି ଦଶା । ଏହି ସମୟରେ ଉକ୍ତ ରାଜ୍ୟରେ ଖୁବ୍ ଜୋର ପ୍ରଜା ଆନ୍ଦୋଳନ ରାଜାଙ୍କ ବିରୁଦ୍ଧରେ ଲାଗିଥିଲା । ପୁଣ୍ୟ ଶ୍ଳୋକ ପଣ୍ଡିତ ଗୋପବନ୍ଧୁ ଦାସ ଏହି ରାଜ୍ୟରେ ପ୍ରଥମେ ହାଇ. ସ୍କୁଲ ଶିକ୍ଷକ କାର୍ଯ୍ୟ କରିଥିଲେ । ତାଙ୍କ ରହଣି ସମୟରେ ସେ ଯେଉଁ ମାନବୀୟ ସମତା ବୀଜ ବପନ କରିଥିଲେ ତାହା ବିଶାଳ ତରୁରେ ପରିଣତ ହୋଇଅଛି । ରାଜା ଆନ୍ଦୋଳନରେ ଶାନ୍ତିପୂର୍ଣ୍ଣ ମୁକାବିଲା କରିବାକୁ ଅସମର୍ଥ ହୋଇ ଆଦିବାସୀମାନଙ୍କୁ ମଦପାଣି ଖୁଆଇ ପ୍ରଜାମଣ୍ଡଳ ବିରୁଦ୍ଧରେ ସେମାନଙ୍କୁ ଉତ୍ତେଜିତ କଲେ । ସେମାନେ ପ୍ରଜା-ମଣ୍ଡଳ ନେତାମାନେ ବାସ କରୁଥିବା ଗ୍ରାମମାନଙ୍କୁ ଯାଇ ଗୋଟିଏ ପରେ ଗୋଟିଏ ପୋଡ଼ିବାରେ ଲାଗିଲେ । ଓଡ଼ିଶାର ମୁଖ୍ୟମନ୍ତ୍ରୀ ଏହାର ନୀରବ ଦ୍ରଷ୍ଟା ହୋଇ ରହିପାରିଲେ ନାହିଁ । କେନ୍ଦ୍ରକୁ ଜଣାଇ ମିଲିଟେରୀ ପଠାଇ ରାଜ୍ୟ ଦଖଲ କଲେ । ରାଜା ରାଜ୍ୟାନ୍ତର ହେଲେ । ଅତ୍ୟାଚାରୀ ରାଜକର୍ମ-ଚାରୀମାନେ ବରଖାସ୍ତ ହେଲେ । ଓଡିଶା ସରକାରଙ୍କ ଜଣେ ଏ.ଡି.ଏମ୍. ବାଲେଶ୍ୱର ଡି.ଏମ୍.ଙ୍କ ଅଧୀନରେ ଥାଇ ନୀଳଗିରି ରାଜ୍ୟ ଶାସନ କଲେ, ଦଳେ ମିଲିଟେରୀଙ୍କ ସାହାଯ୍ୟରେ ।

ଆମ୍ଭେ ଅଯୋଧ୍ୟା ଓ ନିକଟବର୍ତ୍ତୀ ଗ୍ରାମମାନ ପୋଡ ଭସ୍ମୀଭୂତ ହୋଇଥିବା ଅବସ୍ଥା ଦେଖୁଥିବାବେଳେ ମିଲିଟେରୀ ବନ୍ଧୁକଧାରୀ ଫୌଜ ଖଣ୍ଡେ ଗାଡିରେ ଆମ ଆଗେ ଆଗେ ଯାଉଥାନ୍ତି । ସେଦିନ ଓଡିଶା ଗଡ-ଜାତ ମଧ୍ୟରୁ ଗୋଟିଏ ଗଡଜାତର ରାଜାକୁ ରାଜ୍ୟାନ୍ତରକରି ଲୋକ ପ୍ରତିନିଧି ଶାସକ ଦ୍ୱାରା ଶାସିତ ହେବାର ଗୌରବ ଅନୁଭବ କଲୁଁ । ସନ୍ଧ୍ୟାରେ ଆମ୍ଭେ ବାଲେଶ୍ୱର ଜିଲ୍ଲା କଂଗ୍ରେସ ଅଫିସରେ ବିଶ୍ରାମ ନେଲୁଁ ଓ ଜିଲ୍ଲା କଂଗ୍ରେସ କର୍ମକର୍ତ୍ତାମାନେ ଆମର ରାତ୍ରୀ ଭୋଜନର ବ୍ୟବସ୍ଥା କଲେ । ତା ୧୬.୧୧ ୪୭ ମଃ ସକାଳୁ Regional Council ର ବୈଠକ ଘଣ୍ଟା ବସି ପ୍ରାୟ ଦିନ ୯।୧୦ଟା ବେଳକୁ ବିଦାୟ ନେବା କଥା କିନ୍ତୁ ଶ୍ରୀ ରାଧାନାଥ ରଥ ଓ

ବି. ଏନ୍. ରାୟଙ୍କ ମଧ୍ୟରେ କଥା କଟାକଟି ତଥା ଅନ୍ୟାନ୍ୟ ସଭ୍ୟଙ୍କ ପ୍ରଶ୍ନୋତ୍ତର ଓ ସଂଦେହ ମୋଚନ କରିବା ନିମନ୍ତେ ବିଷୟର ସରଳୀକରଣ ଓ ତାପରେ ପୂର୍ବଦିନର କେତେକ ଚିଠା ପ୍ରସ୍ତାବକୁ ସଂଶୋଧନ କରିବା ହେତୁ ସଭକାର୍ଯ୍ୟ ୧ ଟାରେ ସାଙ୍ଗ ହେଲା । କଂଗ୍ରେସ ଅଫିସର କର୍ମକର୍ତ୍ତା ମାନେ ଆମ୍ଭର ମଧ୍ୟାହ୍ନ ଭୋଜନର ବନ୍ଦୋବସ୍ତ କରିନଥିଲେ । ଟାଉନ୍ ଭିତରକୁ ଯାଇ ଦେଖିଲୁଁ ଯେ ହୋଟେଲ୍ ସବୁ ବନ୍ଦ । ଆମ୍ଭେ ପ୍ରାୟ ୧୪ଜଣ କର୍ମୀ ହୋଟେଲ ପରେ ହୋଟେଲ ଅନୁସନ୍ଧାନ କଲୁଁ । ରାଧାନାଥ ବାବୁ ମଧ୍ୟ ଆମ୍ଭ ସାଙ୍ଗରେ ଥାନ୍ତି । ଆମ୍ଭର ଏ ଅବସ୍ଥା ଦେଖି ଜଣେ ମହିଳା, ହୋଟେଲ୍ ମାଲିକାଣି ଘଣ୍ଟା ଅପେକ୍ଷା କଲେ ଖାଇବାକୁ ଦେଇ ପାରିବାର ପ୍ରତିଶ୍ରୁତି ଦେଲେ । ଆମ୍ଭେ ସ୍ୱୀକାର କରି ଅପେକ୍ଷା କଲୁ । ଠିକ୍ ଏକ ଘଣ୍ଟା ପରେ ସେ ଆମ୍ଭମାନଙ୍କୁ ଭଲଭବେ ଖାଇବାକୁ ଦେଲେ । ସରୁ ଅନ୍ନ, ଡାଲିରେ ମାଛମୁଣ୍ଡ ଛେଚଡା, ତରକାରୀରେ ଛୋଟ ଛୋଟ ଚିଙ୍ଗୁଡ଼ ପଡ଼ିଥିଲା । ମାଛ ଭଜା, ବଡ ଚିଙ୍ଗୁଡ଼ ଝୋଳ, ଖଟା, ଲେମ୍ବୁ ଇତ୍ୟାଦି । ଭଦ୍ର ମହିଳା ଆମ୍ଭ ସାମନାରେ ବସି ରହି ଯାଚି ଯାଚି ଖୁଆଇଲେ । ଆମ୍ଭର ମିଲ ପ୍ରତି ଦେୟ ହେଲା ତିନିଅଣା ମାତ୍ର, (ବର୍ତ୍ତମାନ ୧୯ ପଇସା) । ମୋହି ମିଲ୍ ଚୌକିରେ ବସାଇ ଟେବୁଲ୍ ଉପରେ ବାଢିଦେଲେ । ବର୍ତ୍ତମାନ ଟ ୬୦ ଙ୍କାରୁ ନ୍ୟୁନ ହେବ ନାହିଁ । ହୋଟେଲ୍ ମାଲିକାଣୀର ବ୍ୟବହାରରେ ଆମ୍ଭେ ସମସ୍ତେ ପ୍ରୀତ । ରାଧାନାଥ ବାବୁ ତାଙ୍କୁ ଡାକି ବହୁତ ପ୍ରଶଂସା କଲେ ଓ ନମସ୍କାର କରି ତାଙ୍କଠାରୁ ବିଦାୟ ନେଲୁଁ । ମଧ୍ୟ ପ୍ରଦେଶ କର୍ମୀମାନେ ସେତେବେଳେ ଆମ୍ଭ ସଙ୍ଗେ ନଥିଲେ ବୋଧହୁଏ । ସଭଶେଷରେ ଷ୍ଟେସନକୁ ଆସି ସେଠାରେ ବି.ଏନ୍.ଆର. ହୋଟେଲରେ ଖାଇଲେ ଓ ତାଙ୍କର ଗାଡ଼ଧରି ଚାଲିଗଲେ । ମୁଁ ଏବଂ ଧନଞ୍ଜୟ ବାବୁ, ରାଧାନାଥ ବାବୁ ଓ ଅନ୍ୟାନ୍ୟ ସହକର୍ମୀଙ୍କଠାରୁ ବିଦାୟ ନେଇ ଷ୍ଟେସନକୁ ଆସିଲୁଁ ଓ ରାତିରେ ଖଡ଼ଗପୁର ପହଞ୍ଚିଲୁଁ । ସେଠାରୁ ଗୁହାଭିମୁଖେ ଟ୍ରେନ୍ ଧରି ସେ ଦାନପୋଷ ଷ୍ଟେସନରେ ଓହ୍ଲାଇ ପଡ଼ିଲେ । ମୁଁ ଆମ୍ଭର ଗଡପୋଷ କର୍ମୀମାନଙ୍କୁ ସମସ୍ତ ବିଷୟ ଶୁଣାଇ ତାଙ୍କ ମନରେ ଟିକିଏ ଉତ୍ସାହ ଖେଳାଇ ଦେବାକୁ ଗଡପୋଷରେ ଓହ୍ଲାଇଗଲି ରାତିରେ । କର୍ମୀମାନଙ୍କ ସହିତ ସାକ୍ଷାତ ଓ କଥୋପକଥନ ହେଲା । ଦିନ ୧୦ ଟାରେ ଷ୍ଟେସନକୁ କର୍ମୀଙ୍କ ଗହଣରେ ଆସିଲୁଁ । ୧୧ ଟାରେ ବାମର ଯାଇ ୧୨ଟା

ବସରେ କୁଚିଣ୍ଡା ଆସିବା ମୋର ପ୍ରୋଗ୍ରାମ ଥାଏ କିନ୍ତୁ ସେଦିନ ୧୪ ଅପ୍ ଟ୍ରେନ୍ ୫ ଘଣ୍ଟା ବିଳମ୍ବରେ ପହଞ୍ଚିଲା । ମୁଁ ୪ଟାରେ ଗଡପୋଷରୁ ଆସି ବାମରରେ ପହଞ୍ଚିଲି ଓ ପ୍ରଜାମଣ୍ଡଳ କର୍ମୀମାନଙ୍କ ସହ କଥାବାର୍ତ୍ତା ହୋଇ ଆମ୍ଭର ହେଡ ଅଫିସ ରତ୍ନାକର ପଟେଲଙ୍କ ଘରେ ରତ୍ରୀଯାପନ କଲି ।

ତା ୧୯ । ୧୧ । ୪୭ ମଃ ସକାଳୁ ଗୁବିନ୍ଦପୁରରୁ କୁଚିଣ୍ଡା ଅଭିମୁଖେ ଆସୁଥିବା ଗୋଟିଏ ଟ୍ରକରେ କୁଚିଣ୍ଡା ଆସି ଏସ୍ ଡ.ଏମ୍. କୋର୍ଟରେ ମୋର ୩୮୦ ଧାର ମୋକଦ୍ଦମା ଥିବାରୁ ହାଜର ହେଲି । ମୋକଦ୍ଦମାଟି ତା ୮ । ୧୨ । ୪୭ ମଃ କୁ ପେଶୀ ହେଲା । ରତିରେ ଘରକୁ ଆସି ଦେଖେଁ ଯେ ସ୍ତ୍ରୀଙ୍କ ସ୍ୱାସ୍ଥ୍ୟ ଖରପ ।

ତା ୨୦ । ୧୧ ସକାଳୁ ହରିଜନ ପଡାକୁ ଯାଇ କର୍ମୀମାନଙ୍କ ସହିତ ଆଳାପ କଲି । ଘରକୁ ଆସି ଖବର କାଗଜ ସବୁ ପଢି ବିଶ୍ରାମ ନେଲି ।

ତା ୨୧ । ୧୧ ରେ ହରିଜନ ପଡାକୁ ଯାଇ କର୍ମୀମାନଙ୍କ ସହ କଥୋପକଥନ । ପୁଣି କୁଚିଣ୍ଡାକୁ ଆସି କୋର୍ଟରୁ ମୋର ନାମରେ ହୋଇ-ଥିବା ୩୮୦ ମକଦ୍ଦମାର ଚ୍ଚର୍ଜସିଟ୍‌ର ନକଲ ଓ ଆମ୍ଭଙ୍କୁ କମ୍ୟୁନିଷ୍ଟ ଆଖ୍ୟା ଦେଇ ୧୪୪ ଡାରି କରିଥିବା ପୁଲିସ ରିପୋର୍ଟର ନକଲ ବାହାର କଲି । ଆମ୍ଭର ପ୍ରଜାମଣ୍ଡଳ ଆଫିସରେ କାମକଲି, ରିଆମାଳ ଶମରତ୍ରୀ ଦାଶ ନିକଟକୁ ପ୍ରଜାମଣ୍ଡଳ ସଭ୍ୟ କରିବା ରସିଦ ବହି କେତେ ଖଣ୍ଡ ପଠାଇଲି ଓ ରିଆମାଳ ଅଞ୍ଚଳରେ ଦୃଢ ସଂଗଠନ କରିବାକୁ ପତ୍ର ଲେଖିଲି । ସେଦିନ ଅଫିସରେ କେତେଜଣ କର୍ମୀଙ୍କ ସଙ୍ଗେ କଥାବାର୍ତ୍ତା ହୋଇ ତା ୨୭।୧୨।୪୭ ମଃରେ କୁଚିଣ୍ଡାରେ ଗୋଟିଏ ବିରାଟ ପ୍ରଜାମଣ୍ଡଳ ସଭା— ମଧ୍ୟପ୍ରଦେଶ ଓ ଓଡ଼ିଶାର ଗଡଜାତ ସମୂହର ନେତାଙ୍କୁ ଡକାଇ କରିବାର ପ୍ରସ୍ତାବ ହେଲା । ସଙ୍ଗେ ସଙ୍ଗେ ଧନଞ୍ଜୟ ମାହାନ୍ତଙ୍କ ନିକଟକୁ ଏ ବିଷୟ ଜଣାଇଲି ପତ୍ରଦ୍ୱାର ଯେ ସେ ସଭହେବା ପୂର୍ବରୁ ପତ୍ରପାଇବା ମାତ୍ରେ କୁଚିଣ୍ଡା ଆସି ସଭାର ସଫଳତା ବିଷୟରେ ଆମ୍ଭଙ୍କୁ ଦିଗଦର୍ଶନ ଦେବା ନିମନ୍ତେ । ତା ୨୨।୧୧ରେ ସକାଳୁ ହରିଜନ ପଡା ଭ୍ରମଣ ପରେ କେତୋଟି ସମ୍ବାଦ ଖବର କାଗଜମାନଙ୍କୁ ଲେଖି ପଠାଇଲି ଓ Indian Adminis-ration ବିଷୟରେ ପଢିଲି । ତା ୨୩।୧୧ରେ ଜାଣିବାକୁ ପାଇଲି ଯେ, ଜୟଦେବ ଠାକୁର ଜମିଦାର ନିର୍ଦ୍ଧିମାଳ, ବକ୍ସମାଠାରେ ଗୋଟିଏ ଆଦିବାସୀ ସଭକରି ପ୍ରଜାମଣ୍ଡଳ ବିରୁଦ୍ଧରେ ରାଜଶାସନକୁ ସମର୍ଥନ କରିବା

କରିବା ନିମନ୍ତେ । ତାଙ୍କର ସ୍ୱଜାତି ଭୂୟାଁ ସଂପ୍ରଦାୟର ଲୋକମାନଙ୍କୁ ଉତ୍ସାହିତ କରୁଅଛନ୍ତି । ମୋ ଗ୍ରାମ ନିକଟବର୍ତ୍ତୀ କିରଣାସନ ମୌଜାରେ ଅନେକ ଭୂୟାଁ ଜାତିର ଲୋକ ଅଛନ୍ତି ଓ ସେମାନଙ୍କ ମଧ୍ୟରୁ ବଳିଝାଙ୍କର ଓ ଅନ୍ୟ କେତେଜଣ ଆମ୍ଭ ପ୍ରଜାମଣ୍ଡଳ ସଭ୍ୟଭୁକ୍ତ ହୋଇ କର୍ମୀ ହିସାବରେ କାମ କରନ୍ତି ସେମାନଙ୍କୁ ଉକ୍ତ ବକ୍ସମା ସଭକୁ ବିଶେଷ ଉପଦେଶ ଦେଇ ପ୍ରଜାମଣ୍ଡଳର କାର୍ଯ୍ୟକୁ ସମର୍ଥନ କରିବା ନିମନ୍ତେ ପଠାଇଲି ।

ତା ୨୪।୧୧ ରେ ଅମ୍ବର ତା ୨୭।୧୨।୪୭ ମଃ ବୃହତ୍ତର ପ୍ରଜାମଣ୍ଡଳ ସଭକୁ ଆସି ଯୋଗଦେବା ନିମନ୍ତେ ସୁନ୍ଦରଗଡ ପ୍ରଜାମଣ୍ଡଳ ସଭପତି ଶ୍ରୀ ସୁନ୍ଦରମଣି ପଟେଲ, ମଧ୍ୟପ୍ରଦେଶ କୋରିଆ ରାଜ୍ୟ ପ୍ରଜାମଣ୍ଡଳ ସଭପତି ମାଳଭିନ୍ଦ୍ ଜି ଓ ରାଜନାନ୍ଦ ଗାଁ ପ୍ରଜାମଣ୍ଡଳ ସଭପତି ବି. ଏନ୍ ରାୟଙ୍କ ନିକଟକୁ ପତ୍ର ଲେଖିଲି । ସେଦିନ ସମ୍ବଲପୁର ତରଫରୁ କେତେଜଣ କର୍ମୀ ମୋ ନିକଟକୁ ଆସିଲେ । ଆଖପାଖ ପ୍ରଜାମଣ୍ଡଳ କର୍ମୀମାନଙ୍କୁ ସଙ୍ଗେ ସଙ୍ଗେ ଡକାଇ ଦେଲି । ରାତିରେ ଧନେଶ୍ୱର ଦାଦାଙ୍କ ଘରେ ବାମଣ୍ଡା ପ୍ରଜାମଣ୍ଡଳ କାଉନସିଲର ବୈଠକ ବସିଲା । ଗୌରୀଶଙ୍କର ମହାପାତ୍ର ସେଦିନ ଜାମିନରେ ଦେବଗଡ ଜେଲରୁ ଆସିଥିଲେ । କାଉନ୍‌ସିଲର ବୈଠକ ଖୁବ୍ ଭଲଭବେ ଶେଷ ହେଲା ।

ତା ୨୫।୧୧ ରେ ସାହାଜବାହାଲ ପ୍ରଜାମଣ୍ଡଳ ସଭହେବା ସ୍ଥିରହେଲା । ମୁଁ କାର୍ଯ୍ୟ ବଶତଃ ଉକ୍ତ ସଭକୁ ନିଜେ ନଯାଇ ଏ ତରଫରୁ ବହୁତ ପ୍ରଜା-ମଣ୍ଡଳ କର୍ମୀ ଓ ପ୍ରେମୀଙ୍କୁ ଉକ୍ତ ସଭକୁ ପଠାଇଲି । ଅପରହ୍ନରେ ଗୌରୀ-ଶଙ୍କର ଦାଦାଙ୍କ ସଙ୍ଗେ ତାଙ୍କ ଆରେଷ୍ଟ, ମକଦ୍ଦମା ବିଚାର, ଜେଲଖାନାର ଅନୁଭୂତି, ଦାଶରଥି କକା ଓ ରାମଚନ୍ଦ୍ର ବାବୁଙ୍କ ସ୍ୱାସ୍ଥ୍ୟ ଓ ଅନ୍ୟାନ୍ୟ ଅନେକ ବିଷୟରେ କଥାବାର୍ତ୍ତା ହେଲୁଁ । ସନ୍ଧ୍ୟାରେ ସାହାଜବାହାଲ ସଭ ଖୁବ୍ ଭଲ ହୋଇଥିବାର ଶୁଣିବାକୁ ପାଇଲି । ରାତିରେ ପ୍ରଜାମଣ୍ଡଳର କେତେକ ପ୍ରସ୍ତାବ ଚିଠା କଲି ।

ତା ୨୬।୧୧।୪୭ ମଃ ଦାଶରଥି ମିଶ୍ର, ରାମଚନ୍ଦ୍ର ନାୟକ ଓ ଗୌରୀ-ଶଙ୍କରଙ୍କ ହାଇକୋର୍ଟ ମୋକଦ୍ଦମାରେ ଉକିଲ ଦେବା ନିମନ୍ତେ ବିଳାସପୁର ଅଭିମୁଖେ ବାହାରିଲି – ସେତେବେଳେ ବିଳାସପୁରରେ ଭଲ ଉକିଲ ଥିବାର ମୁଁ ଜାଣିବାକୁ ପାଇଥିଲି । କିନ୍ତୁ ଆବଶ୍ୟକୀୟ ରାୟ ନକଲ ଗୁଡାକ ଦାଶରଥି ମିଶ୍ରଙ୍କ ପୁତ୍ର ରମାକାନ୍ତ, ରାମଝାଲି ପାଖରେ ଥିବାରୁ ଓ ସେ

କୁଚିଣ୍ଡାକୁ ଆସି ନଥିବାରୁ ମୁଁ କୁଚିଣ୍ଡାରେ ରହି ପ୍ରଜାମଣ୍ଡଳ ଅଫିସରେ କାମ କଲି ଓ ସନ୍ଧ୍ୟାରେ ଘରକୁ ଲେଉଟି ଆସିଲି ।

ତା ୨୭।୧୧।୪୭ ମଃରେ ମୁଁ ଘରେ ବସି ଖବର କାଗଜ ନିକଟକୁ ପଠାଇବା ନିମନ୍ତେ କେତେକ ସମ୍ବାଦ ଲେଖୁଥାଏ । ଗ୍ରାମ ଦାଣ୍ଡରେ ଧ୍ୱନି ହେବାର ଶୁଣିଲି । ଧ୍ୱନି ସ୍ପଷ୍ଟରୁ ସ୍ପଷ୍ଟତର ହେବାକୁ ଲାଗିଲା— ମହାତ୍ମା ଗାନ୍ଧି କି ଜୟ, ଇତ୍ୟାଦି ସହ ବାମଣ୍ଡା ପ୍ରଜାମଣ୍ଡଳ କି ଜୟ ମଧ୍ୟ ଶୁଣାଗଲା । ଘରୁ ବାହାରି ପଟୁଆରରେ ଆସୁଥିବା ଦୁଇଶତାଧିକ ବନ୍ଧୁଙ୍କ ଅଗ୍ରରେ ପୁଷ୍ପ-ମାଳ ବିଭୂଷିତ ସମ୍ବଲପୁର ଜିଲ୍ଲା କଂଗ୍ରେସ ସଂପାଦକ ଶ୍ରୀ ମିତ୍ରଭାନୁ ପାଣିଗ୍ରାହୀଙ୍କୁ ସମସ୍ତଙ୍କ ସହ ସ୍ୱାଗତ କଲି । ଗ୍ରାମର ପ୍ରଜାମଣ୍ଡଳ କର୍ମୀମାନେ ସମସ୍ତେ ମୋ ଘରେ ଜୁଟି । ଆଗନ୍ତୁକ ବନ୍ଧୁଗଣଙ୍କ ସେବାରେ ସେମାନେ ଲାଗିଗଲେ । ଗରିବ କୁଟୀରରେ କିଆ ମୁଢି, ଓ' ପାଣି କିଏ କିପରି ଆଣି ତାଙ୍କ ସମ୍ମୁଖରେ ଥୋଇଲେ ଓ ସେ ପ୍ରସାଦର କିପରି ଉପଯୋଗ ହେଲା ତାର ବର୍ଣ୍ଣନା ମିତ୍ରଭାନୁ ପାଣିଗ୍ରାହୀ କରିପାରନ୍ତି । ମୋ ଉପରେ ଗୁରୁଦାୟିତ୍ୱ ଯେ ସେଦିନ ଅପରାହ୍ନ ୨ ଟାରେ କୁଚିଣ୍ଡା ହାଟଦାଣ୍ଡରେ ପ୍ରଜାମଣ୍ଡଳ ସଭା ହେବ । ବନ୍ଧୁମାନେ ଗୁରୁଗରୁ ପଟୁଆର କରି ଆସିଥିବା ହେତୁ କୁଚିଣ୍ଡାର ଉତ୍ତର ଦିଗଟି ଓ ପୂର୍ବ-ପଶ୍ଚିମର ଅର୍ଦ୍ଧାଂଶ ପ୍ରଚାର ହୋଇଯାଇଥିଲା । ବାକି ପୂରାପୂରି ଦକ୍ଷିଣ ଓ ପୂର୍ବ ପଶ୍ଚିମର ବାକି ଅର୍ଦ୍ଧାଂଶ ପ୍ରଚାର କରିବା ଦାୟିତ୍ୱ ମୋର ଉପରେ । ଗ୍ରାମସ୍ଥ କର୍ମୀଗଣ ପ୍ରେରିତ ହେଲେ ପ୍ରଚାର ନିମନ୍ତେ ଏବଂ କୁଚିଣ୍ଡାର ୨୦ ମାଇଲ ବ୍ୟାସାର୍ଦ୍ଧରେ ଦାବାନଳ ସଦୃଶ ପ୍ରଚାର କାର୍ଯ୍ୟ ହୋଇଗଲା । ବନ୍ଧୁମାନଙ୍କୁ ଗ୍ରାମବାସୀମାନେ ୨।୪ ଜଣ କରି ନିଜ ନିଜ ଘରକୁ ନିମନ୍ତ୍ରଣ କରିନେଲେ ଓ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସେମାନଙ୍କୁ ମଧ୍ୟାହ୍ନ ଭୋଜନରେ ଆପ୍ୟାୟିତ କଲେ । ସାତକମାରୁ କୁଚିଣ୍ଡା ଯାଇ ସଭା କଲୁଁ । କୁଚିଣ୍ଡା ହାଟ ପଦାରେ । ଏହି ସଭା ଟିଲାଇବଣୀରେ ବାମଣ୍ଡା ପ୍ରଜାମଣ୍ଡଳ କର୍ମୀମାନଙ୍କୁ ବାମଣ୍ଡା ରଜାଙ୍କର ଫୌଜ ଯେଉଁ ନିର୍ବିଘ୍ନର ମାଡ ଦେଇଥିଲେ ତାର ପ୍ରତିବାଦରେ ହେଲା । ଏହି ବିରାଟ ସଭାରେ ସଭାପତିତ୍ୱ କଲେ ମିତ୍ରଭାନୁ ପାଣିଗ୍ରାହୀ । ମୁଖ୍ୟ ବକ୍ତା ଫକୀର-ମୋହନ ଶତପଥୀ ଝାରସୁଗୁଡା କଂ. କ. ସଂପାଦକ ଓ ବ୍ରଜରାଜନଗର ଶ୍ରମିକ ସଂଗଠକ, ତାଙ୍କ ବ୍ୟତିତ ଶ୍ରୀ ବିରେନ ସରକାର ସମ୍ବଲପୁର ଜିଲ୍ଲା କଂ.କ. ସଭାପତି ଓ ଶ୍ରୀ ପ୍ରସନ୍ନ କୁମାର ରୟଗୁରୁ ସମ୍ବଲପୁର ବିଶିଷ୍ଟ

କଂଗ୍ରେସ କର୍ମୀ ମଧ୍ୟ ଭାଷଣ ଦେଇଥିଲେ । ଏହି ସଭାକୁ ଲଇକେରା, ଝାରସୁଗୁଡା ଓ କତରବଗା ଥାନା ଅଞ୍ଚଳର ବିଶିଷ୍ଟ କଂଗ୍ରେସ କର୍ମୀମାନେ ଆସି ଯୋଗ ଦେଇଥିଲେ । ବାମଣ୍ଡାର ଦଶହଜାର ପ୍ରଜା ଖୁବ୍ ଶାନ୍ତ ଶୃଙ୍ଖଳାର ସହିତ ଏହି ଭାଷଣମାନ ଶୁଣିଥିଲେ । ଲେଖକର ଅନୁରୋଧ କ୍ରମେ ଓ ଆମ୍ଭର କର୍ମୀମାନଙ୍କ ତତ୍ପରତା ହେତୁ ସଭାରେ ନିସ୍ତବ୍ଧତା ବିରାଜମାନ କରିଥିଲା । ସେତେବେଳେ ମାଇକ ନଥିଲା । ଚୁଙ୍ଗା ମଧ୍ୟ ଆମେ ବ୍ୟବହାର କରିନାହୁଁ । ଶ୍ରୀ ଫକୀର ମୋହନ ଶତପଥୀ ଝାରସୁଗୁଡା ଠାରେ ଚିକିତ୍ସା ହୋଇଥିବା ଆଘାତି କର୍ମୀମାନଙ୍କର ରକ୍ତାକ୍ତ ପରିଧେୟ ସବୁ ସାଇତି ରଖିଥିଲେ । ସେ ଏହି ସଭାରେ ସେସବୁ ଜନତାଙ୍କୁ ଦେଖାଇଥିଲେ ଓ ବାମଣ୍ଡା ରାଜ ଦରବାରରେ ଏହି ହୀନମନ୍ୟତା କର୍ମପ୍ରତି ଧିକ୍କାର କରିଥିଲେ । ଶ୍ରୀ ପ୍ରଶନ୍ନ କୁମାର ରାୟଗୁରୁ ବାମଣ୍ଡା ରାଜଦରବାରକୁ ଆହ୍ୱାନ ଦେଇଥିଲେ ଏହି ସଭାରେ ତାର ବୀରତ୍ୱ ପ୍ରଦର୍ଶନ କରିବାକୁ । ସଭାପତି ଶ୍ରୀ ବିରେନ୍ ସରକାର ଗାନ୍ଧିବାଦୀ ନୀତିରେ ଅହିଂସା ସଂଗ୍ରାମ ଚାଲୁ ରଖିବା ନିମନ୍ତେ ଜନତାଙ୍କୁ ଉଦ୍‌ବୋଧନ ଦେଇଥିଲେ ଓ ପ୍ରଜାରାଜ ହେବାର ସୁନିଶ୍ଚିତ ପ୍ରତିଶ୍ରୁତି ଦେଇଥିଲେ, ସଭା ଖୁବ୍ ଜାକଜମକ, ଶାନ୍ତ ଶୃଙ୍ଖଳାର ସହିତ ଶେଷ ହେଲା । ପ୍ରଜାମଣ୍ଡଳର ବିଜୟବାନା ଉଡାଇ ଉଡାଇ ଆମ୍ଭର କର୍ମୀମାନେ ନିଜ ନିଜ ଘରକୁ ଲେଉଟିଲେ । ଲୋକଙ୍କ ମଧ୍ୟରେ ରାଜଶାସନ ପ୍ରତି ତୀବ୍ର ଘୃଣାଭାବ ଉଦ୍ରେକ ହେଲା । ଯେଉଁ ପୁଲିସ ଏସ୍. ଆଇ. ଓ ଇନ୍‌ସପେକ୍ଟର ମାନେ ଏଥି ପୂର୍ବରୁ ପ୍ରଜାମଣ୍ଡଳ କର୍ମୀମାନଙ୍କୁ ହେୟଜ୍ଞାନ କରୁଥିଲେ ସେମାନଙ୍କ ମନରେ ଶଙ୍କା ଉଦ୍ରେକ ହେଲା । ଯେଉଁ ଦଲାଲ ପ୍ରଜାମଣ୍ଡଳ କର୍ମୀମାନେ ରାଜପକ୍ଷ ସମର୍ଥନ କରୁଥିଲେ ସେମାନେ ଦଳ ପରିବର୍ତ୍ତନ କରି ଆମ୍ଭ ପ୍ରଜାମଣ୍ଡଳରେ ପ୍ରାଥମିକ ଚାରିଅଣିଆ ସଭ୍ୟଭୁକ୍ତ ହେଲେ । ସେମାନଙ୍କର ଅଜ୍ଞାତରେ ନକଲି ପ୍ରଜାମଣ୍ଡଳରେ ତାଙ୍କର ନାମ ଦେଇ ପ୍ରଚାର କରୁଥିବାର ପ୍ରକାଶ କଲେ । କେତେକ ଶିକ୍ଷିତ ଚାକିରିଆ ତାଙ୍କର ଚାକିରି ଛାଡ଼ି ଆମ୍ଭର ପ୍ରଜାମଣ୍ଡଳରେ ଯୋଗଦେଲେ ଓ ସଭା-ସମିତିରେ ଖୁବ୍ ବକ୍ତୃତା ଦେଲେ । ସେମାନଙ୍କର ଉଦ୍ଦେଶ୍ୟ ଅନ୍ୟ ପ୍ରକାର ଥିଲା । ମିଶ୍ରଣ ପରେ ସେମାନେ ପୁନଶ୍ଚ ଚାକିରି କଲେ ଓଡିଶା ସରକାରଙ୍କ ଅଧୀନରେ ।

ଏହାପରେ ଗୁବିଦପୁର ଓ କୁଚିଣ୍ଡା ଅଞ୍ଚଳର କର୍ମୀମାନେ ଯୋଜନା-ବଦ୍ଧ ହିସାବରେ ବାମଣ୍ଡା ରାଜ୍ୟ ପ୍ରତ୍ୟେକ ଗ୍ରାମରେ ସଭା ସମିତି କରି

ପ୍ରତ୍ୟେକ ଗ୍ରାମରେ ପ୍ରଜାମଣ୍ଡଳର ଗୋଟିଏ ଲେଖାଁଏ ସଂଗଠନ ରଖିବାର ପ୍ରସ୍ତାବ କଲୁଁ । ଏହି ଯୋଜନା କାର୍ଯ୍ୟକାରୀ କରିବା ନିମନ୍ତେ ଉଦ୍ୟତ ହେବାବେଳେ ଶୁଣିବାକୁ ପାଇଲୁଁ ଯେ ଦେବଗଡ ପ୍ର.ଡ. ବସାଲୋଇ ଉଡାଜାହାଜ ପଡିଆରେ ଗୋଟିଏ ବଡ ପ୍ରଜାମଣ୍ଡଳ ସଭ ହେବାକୁ ଯାଉଛି ତା ୧୦ । ୧୨ । ୪୭ ମଃରେ ଓ ଆମ୍ଭର କୁରିଣ୍ଡା ପ୍ର.ଡ. ସମସ୍ତ ପ୍ରଜାମଣ୍ଡଳ କର୍ମୀ କାହିଁକି ସମସ୍ତ ପ୍ରଜାଙ୍କୁ ସଭରେ ଯୋଗ ଦେବାକୁ ସେମାନେ ନିମନ୍ତ୍ରଣ କରୁଅଛନ୍ତି । ଏଣୁ ଆମ୍ଭର କର୍ମୀ ଓ ନେତାମାନେ ସ୍ୱବିଭଗରେ ବିଭକ୍ତହୋଇ ନିଜ ନିଜ ଅଂଚଳର ସଂଗଠନ କାର୍ଯ୍ୟ ଶେଷକରି ଉକ୍ତ ବସାଲୋଇ ସଭରେ ଯୋଗଦେବାର ପ୍ରସ୍ତାବ କଲୁଁ ।

୧ମ, ଦଳରେ ଦିନବନ୍ଧୁ ଚୌଧୁରୀଙ୍କ ନେତୃତ୍ୱରେ ଚିନ୍ତାମଣି ନାୟକ, ରମଣୀରଞ୍ଜନ ପଟେଲ, ଶଙ୍କାକର ପୁରୋହିତ, ବିମ୍ବାଧର ଗଉତ, ମନବୋଧ ପାଣିଗ୍ରାହୀ, ହାଡବନ୍ଧୁ ସରଫ ପ୍ରଭୃତି କର୍ମୀମାନେ ୧ମ ସଭ କଲେ କତରକେଲ ଠାରେ । କତରକେଲ ଗୋଟିଏ ଜମିଦାରୀ ମୌଜା । ବାମଣ୍ଡା ରାଜ୍ୟର ସବୁଠାରୁ ବଡ ଜମିଦାର ଜଳେଶ୍ୱର ଦେହୁରୀ ଏହି ଜମିଦାରୀରେ ପ୍ରାୟ ୫୧୨ଖଣ୍ଡ ମୌଜାର ଜମିଦାର ଓ ବାମଣ୍ଡା ରାଜାଙ୍କର ଜଣେ ଦୃଢ ପୃଷ୍ଠପୋଷକ । ସେ ତାଙ୍କ ଇଲାକା ମଧ୍ୟରେ ୨ୟ ରାଜା, ପ୍ରଜାମାନଙ୍କୁ ବେଠି ଖଟାଉଥିଲେ ଓ ତାଙ୍କ ଜମିଦାରୀ ଇଲାକାରେ ପ୍ରଜାମଣ୍ଡଳ କର୍ମୀ-ମାନଙ୍କୁ ପ୍ରବେଶ କରିବା ନିମନ୍ତେ ଶକ୍ତ ବାରଣ କରିଥିଲେ । ଜମିଦାର ଘର ସାମନାରେ ସଭ କରିବାର ସ୍ଥିର ହେଲା । ଆମ୍ଭର ସ୍ୱେଚ୍ଛାସେବକ ଶାନ୍ତି-ବାହିନୀ ଯେ କୌଣସି ଅବସ୍ଥାର ସମ୍ମୁଖୀନ ହେବାକୁ ପ୍ରସ୍ତୁତ ଥିଲେ । ସଭକାର୍ଯ୍ୟ ଆରମ୍ଭ ହେବାମାତ୍ରେ ଉକ୍ତ ଜଳେଶ୍ୱର ଜମିଦାର ବଡ ସିନ୍ଦୁର-ଟିକା ମାଖି ତାଙ୍କର ଦେବୀଙ୍କ ଠାରେ ଚିନ୍ତାମଣି, ରମଣୀ ଓ ଦିନବନ୍ଧୁଙ୍କୁ ବଳିଦେବା ନିମନ୍ତେ ଚିତ୍କାର କରି ଗୋଟିଏ ଫୁଟେ ଲମ୍ବର ସୁତୀକ୍ଷ୍ଣ ଉନ୍ମୁକ୍ତ ଖଣ୍ଡାଟେକି ତାଙ୍କ ଆଡକୁ ହଠାତ୍ ଦୌଡ ଆସିଲେ । ସଙ୍ଗେ ସଙ୍ଗେ ଆମ୍ଭର ଠେଙ୍ଗାଧାରୀ ଶାନ୍ତସେନା ତାଙ୍କୁ ଜପ୍ତକରି ତାଲା ପକାଇ ଜଗି ରହିଲେ । ସଭକାର୍ଯ୍ୟ ଶାନ୍ତ ଶୃଙ୍ଖଳା ଉପରେ ଚାଲିଲା । ସେହି ଜମିଦାରୀ-ଇଲାକାରେ ବହୁତ ପ୍ରଜାମଣ୍ଡଳର ପ୍ରାଥମିକ ସଭ୍ୟ ଭୁକ୍ତ ହେଲେ ଓ ଗ୍ରାମରେ ଗୋଟିଏ ପ୍ରଜାମଣ୍ଡଳ କମିଟୀ ଗଠନ କରଗଲା ଶ୍ରୀ ପ୍ରମୋଦ ନାୟକଙ୍କ ସଭପତିତ୍ୱରେ । ସେଠାରୁ ଏହି ଦଳ ଗ୍ରାମକୁ ଗ୍ରାମ ସଭ କରି କରି ମାଡ-

ଚଳିଲେ ଗୌଡପାଲି ଇଲାକା ମଧ୍ୟକୁ ସ୍ଥାନେ ସ୍ଥାନେ ସଭ ଓ ପ୍ରଜାମଣ୍ଡଳ କମିଟୀମାନ ଗଠନ କରି କରି । ଏହି ଦଳଙ୍କ ଅନ୍ୟ ଗୋଟିଏ ଉଲ୍ଲେଖନୀୟ ଘଟଣା ହେଉଛି—ମେଣ୍ଢାବାହାଳ ମୌଜାରେ ଈଶ୍ୱର ଚନ୍ଦ୍ର ଶର୍ମା ଉଡ଼ୁଙ୍ଗଙ୍କ ସଭପତିତ୍ୱରେ ଗୋଟିଏ ପ୍ରଜାମଣ୍ଡଳ ସଭ ହେଲା । ଅନ୍ୟାନ୍ୟ ସଭପତି ସେଦିନ ଦିନବନ୍ଧୁ ଚୌଧୁରୀ ରାଜଶାସନର ଅପକାରିତା ତଥା ପ୍ରଜାମଣ୍ଡଳ ଭଳିଏ ଲୋକ ପ୍ରତିନିଧି ଶାସନର ଉପକାରିତା ବିଷୟରେ ବୁଝାଇଲେ । ସଭରେ ଉପସ୍ଥିତ ଥିବା ପ୍ରାୟ ସମସ୍ତ ପ୍ରଜା ପ୍ରଜାମଣ୍ଡଳ ସଭ୍ୟଭୁକ୍ତ ହେଲେ ଅଧିକନ୍ତୁ,ବାମଣ୍ଡା ପୁଲିସ ତରଫରୁ ସଭର ଗତିବିଧି ତନଖି ସରକାରଙ୍କୁ ରିପୋର୍ଟ କରିବା ନିମନ୍ତେ ଉକ୍ତ ସଭକୁ ଗଉଡପାଲି ଥାନାରୁ ଯାଇଥିବା ଏ.ଏସ.ଆଇ. ଶ୍ରୀ ଦୟାନିଧି ପାଣିଗ୍ରାହୀ ମଧ୍ୟ ପ୍ରଜାମଣ୍ଡଳ ପ୍ରାଥମିକ ସଭ୍ୟ ହେବାକୁ ପ୍ରାର୍ଥନା କଲେ । ସଭପତି ଏହା ତାଙ୍କର ପ୍ରତାରଣା ବୋଲି ତାଙ୍କୁ ସଭ୍ୟ ଭୁକ୍ତ କରିବାକୁ ମନା କଲେ । ସେ ସଙ୍ଗେ ସଙ୍ଗେ ତାଙ୍କ ପୋଲିସ ପୋଷାକ ଉତାରି ଇସ୍ତଫା ଲେଖି ସଭପତିଙ୍କୁ ସମର୍ପଣ କଲେ । ଜଣେ ଚୌକିଦାର ଜରିଏ ଉକ୍ତ ପୋଷାକ ଓ ଇସ୍ତଫା ପତ୍ର ଗୌଡପାଲି ଥାନା ଇନ୍‌ସପେକ୍ଟର ନିଶାମଣି କୁଅଁର ଙ୍କ ନିକଟକୁ ପଠାଇ ଦିଆଗଲା । ପାଣିଗ୍ରାହୀ ଆମ୍ଭର କର୍ମୀମାନଙ୍କ ସହ ରହି ପ୍ରଜାମଣ୍ଡଳ କାର୍ଯ୍ୟ କଲେ । ବାମଣ୍ଡା ପୁଲିସ ସୁପରିନ୍‌ଟେନଡେଣ୍ଟ ନିତ୍ୟାନନ୍ଦ ସାହୁ ଉକ୍ତ ପାଣିଗ୍ରାହୀଙ୍କୁ ତାଙ୍କ ଚାକିରୀରୁ ବରଖାସ୍ତ କଲେ । ଏହି ଦଳ ବଗାଲୋଇ ଅଭିମୁଖେ ଶିରୀ ପ୍ରଭସ୍ଥିଣି ହୋଇ ଚାଲିଲେ ।

ଆମ୍ଭର ୨ୟ ଦଳ ଜମନକିରାରୁ ବାହାରି ଟିକିଲିପଡା, କଂଶର, ରିଆମାଳ, ଟିଙ୍କରିର ଓ ନିକଟବର୍ତ୍ତୀ ଗ୍ରାମମାନଙ୍କରେ ସଭ କରି ପ୍ରଜାମଣ୍ଡଳର ପ୍ରାଥମିକ ସଭ୍ୟ ସଂଗ୍ରହ କରିବା ସଙ୍ଗେ ସଙ୍ଗେ ପ୍ରାଇମେରୀ ପ୍ରଜାମଣ୍ଡଳ କମିଟୀମାନ ଗଠନ କରି ତା ୧୦।୧୨ରେ ବଗାଲୋଇ ପହଞ୍ଚିଲେ । ଏହି ଦଳର ନେତୃତ୍ୱ ନେଇଥିଲେ ଶ୍ରୀ ବାଣେଶ୍ୱର ମାଝୀ, କୃଷ୍ଣଚନ୍ଦ୍ର ପଟ୍ଟନାୟକ ନନ୍ଦ ଜୟପୁରିଆ ପ୍ରଭୃତି ଗ୍ରାମକୁ ଗ୍ରାମ ମାଡ ଚାଲିଲା ବେଳେ ସଭ୍ୟ ସଂଖ୍ୟା କ୍ରମଶଃ ବୃଦ୍ଧିପ୍ରାପ୍ତ ହେଉଥାଏ । ବଗାଲୋଇରେ ପହଞ୍ଚିଲା ବେଳକୁ ଏହାଙ୍କ ସଂଖ୍ୟା ସହସ୍ରାଧିକ ହୋଇଥିଲା ।

ଆମ୍ଭର ୩ୟ ଦଳର ନେତୃତ୍ୱ ନେଇଥିଲେ (୧) ରାଜିବ ଲୋଚନ ପଟେଲ, ଉଲୁଣ୍ଡା (୨) ଜଲେଶ୍ୱର ଗୌନ୍ତିଆ, କୁନ୍ତରା ଏମାନଙ୍କ ସହକର୍ମୀ

ଥିଲେ (୩) ଉପେନ୍ଦ୍ର ପଣ୍ଡା, ପଣ୍ଡରିପଥର (୪) ଘାସିରାମ ପଟେଲ (୫) ଗଙ୍ଗା ନାୟକ, ବଡବାହାଲ (୬) ଶଶୀକାନ୍ତ ପାଢୀ (୭) ବ୍ରଜମୋହନ ନାୟକ, ହିଣ୍ଡେରକେଲା (୮) ବାମଦେବ ପ୍ରଧାନ, ସାଲେପାଲି (୯) କଇତ କିସାନ, କୁନ୍ଦର (୧୦) ଭୋଳାନାଥ ନାୟକ, ଟନମୁରା । ଏମାନେ କୁସୁମୀ ପାଖ ପାଖ ବଡବାହାଲ, ହିଣ୍ଡେରକେଲା ଠାରେ ସଭାକରି ଚାଲି-ଗଲେ ଲଇମୁରାକୁ । ସେଠାରେ ହିରାଧର ମହାନାୟକଙ୍କ ସଭାପତିତ୍ୱରେ ଗୋଟିଏ ସଭା ହେଲା । ବହୁ ସଂଖ୍ୟାରେ ପ୍ରଜାମଣ୍ଡଳ ସଭ୍ୟଭୁକ୍ତ ହେଲେ । ଆମର କର୍ମୀମାନଙ୍କ ରହିବା ଖାଇବା ସମସ୍ତ ବନ୍ଦୋବସ୍ତ ହେଲା । ଅନ୍ୟଦିନ ଆମ କର୍ମୀମାନଙ୍କ ସହିତ ପ୍ରାୟ ୨୦୦ ଜଣ କର୍ମୀ ଲଇମୁରା ଗ୍ରାମରୁ ବାହାରି ସାଲୋହିରେ ସଭା କଲେ । ସେଠାରେ ଆଉ ଜ୨୫ଣ କର୍ମୀ ଏହାଙ୍କ ସଙ୍ଗେ ଯାଇ ଝରଗୋଟୁଆରେ ସଭାକଲେ । ଲୋକମାନେ ବହୁତ ଉତ୍ସାହ ସହକାରେ ପ୍ରଜାମଣ୍ଡଳର ଚାରିଅଣିଆ ସଭ୍ୟ ଭୁକ୍ତ ହୋଇଥିଲେ । ସେଠାରେ ସବୁ ସଭା ସ୍ଥଳରେ ତାଙ୍କର (ଏକ ଅଣା) ନକଲି ପ୍ରଜାମଣ୍ଡଳ ସଭ୍ୟ ଚନ୍ଦା ରସିଦ କଲେ । ସମସ୍ତ କର୍ମୀଙ୍କ ଖାଇବା ଓ ଶୋଇବା ବନ୍ଦୋବସ୍ତ କଲେ । ଅନ୍ୟଦିନ ଏମାନେ ପଟୁଆର କରି କଦଳୀମୁଣ୍ଡା ହୋଇ ୧୦ ଟାରେ ତୁଷୁଡା ଠାରେ ଗୋଟିଏ ସଭା କଲେ । ସେଠାରୁ ବଲମ ମୌଜାରେ ପହଞ୍ଚିଲେ । ଏହାଙ୍କ ସଂଖ୍ୟା କ୍ରମଶଃ ବଢିବାରେ ଲାଗିଥାଏ । ବଲମରେ ଥିବା ମନ୍ଦଭଟି ପିଟିଲେ । ତା ୯-୧୨-୪୭ ମଃ ପ୍ରାୟ ୨/୩ ଟା ବେଳେ ବସାଲେଇ ଗ୍ରାମକୁ ପହଞ୍ଚିଲା ବେଳେ ଗ୍ରାମ ମୁଣ୍ଡରେ ବାମଣ୍ଡା ପୁଲିସ ସୁପରିନ୍‌ଟେନ୍‌ଡେଣ୍ଟ ନିତ୍ୟାନନ୍ଦ ସାହୁ ଖଣ୍ଡେ ଖଟ ପକାଇ ମୁହଁ ଶୁଖାଇ ବସିଥାନ୍ତି । କେତେଜଣ ପୁଲିସ କନ୍‌ଷ୍ଟେବଲ ବନ୍ଧୁକ ଧରି ଠିଆ ହୋଇଥାନ୍ତି । ଆମର ଦଳ— "ଇନ୍‌କ୍ୟୁଲାବ ଜିନ୍ଦାବାଦ, ଲଢକେ ଲେଙ୍ଗେ ପ୍ରଜାରାଜ" ପ୍ରଭୃତି ନାନାଦି ଧ୍ୱନିରେ ଗଗନ ପବନ ପ୍ରକମ୍ପିତ କରି ସଭାମଣ୍ଡପକୁ ଯାଇ ଅଭ୍ୟର୍ଥନା ଗ୍ରହଣ କଲେ ।

ତା ୨୮ । ୧୧ । ୪୭ ମଃ ବଳଣ୍ଡାରେ ଗୋଟିଏ ବିରାଟ ପ୍ରଜାମଣ୍ଡଳ ସଭାର ଆୟୋଜନ ହୋଇଥାଏ । ଏହା ମଧ୍ୟ ବାମଣ୍ଡାର ଜମିଦାର ଶ୍ରୀ ଅଭିମନ୍ୟୁ ସିଂ ମହାପାତ୍ର ଆମର ପ୍ରଜାମଣ୍ଡଳ ସପକ୍ଷବାଦୀ । ସମ୍ବଲପୁର ଜିଲ୍ଲା କଂଗ୍ରେସ କମିଟୀରୁ ଆସିଥିବା କର୍ମୀମାନେ ଓ ସଭାପତି ବିରେନ୍ ସରକାର ଏହି ସଭାରେ ସଭାପତିତ୍ୱ କରିବାର ସ୍ଥିର ହୋଇଥିଲା ।

ଏ ତରଫରୁ ବହୁ ସଂଖ୍ୟାରେ ପ୍ରଜାମଣ୍ଡଳ କର୍ମୀ ଓ ପ୍ରେମୀମାନଙ୍କୁ ମୁଁ ଉକ୍ତ ସଭକୁ ପଠାଇଲି ଓ ପ୍ରତି ଦିନ ବଡ ବଡ ଗ୍ରାମ ମାନଙ୍କରେ ଗୋଟିଏ ଲେଖାଏଁ ସଭ ହୁଡିଣ୍ଡା ସ.ଡ.ର ପ୍ରତ୍ୟେକ ଅଞ୍ଚଳରେ ହୋଇପାରିବ ତାର ବନ୍ଦୋବସ୍ତ କଲୁଁ । ମୁଁ, ଦାଶରଥି ମିଶ୍ର, ରାମଚନ୍ଦ୍ର ନାୟକ ଓ ଗୌରୀଶଙ୍କର ମହାପାତ୍ରଙ୍କ ହାଇକୋର୍ଟ ମକଦ୍ଦମାରେ ଉକିଲ ବନ୍ଦୋବସ୍ତ କରିବାକୁ ରାୟଗଡ ଚାଲିଗଲି ।

ତା ୨୯ । ୧୧ । ୪୭ ମଃରେ ଉକିଲ ଖୋଜିବାକୁ ରାୟଗଡରୁ ବିଳାସପୁର ଚାଲିଗଲି । ସେ ସ୍ଥାନର କୌଣସି ଉକିଲଙ୍କ ରାୟଗଡ ହାଇକୋର୍ଟ ନିମନ୍ତେ ଲାଇସେନ୍ସ ନଥିଲା । ଯାହାକୁ ଆଣିଲେ ଲାଇସେନ୍ସ ବାବଦକୁ ୫୫୦ଙ୍କା ଫିସ ୫ ୧୫୦ ଙ୍କା, Adjournment petition ଇତ୍ୟାଦି ଇତ୍ୟାଦି ଖର୍ଚ୍ଚ ମିଶି ୫୨୫୦ଙ୍କା ଦେବା ମୋର ଶକ୍ତି ବାହାରେ । ତା ୩୦।୧୧ରେ ରାୟଗଡ ଆସି କଂଗ୍ରେସ ଅଫିସରେ ରହିଲି । ଖାଇବା ଶୋଇବାର ଠିକ୍ ଠିକଣା ନାହିଁ— କେବଳ ଚଳନ୍ତା ଗାଡ଼ରେ ଯାହା ମିଳୁଥାଏ । ରାୟଗଡ କଂଗ୍ରେସ ସଭପତି ଶ୍ରୀ ବିଦ୍ୟାଚରଣ ଲାଲ ଶର୍ମାଙ୍କ ଠାରୁ ପତ୍ର ନେଇ ତାଙ୍କର ଜଣେ ବନ୍ଧୁ ଉକିଲ ପାଖକୁ ଜାଞ୍ଜଗୀର ଗଲି । ଏହା ମଧ୍ୟପ୍ରଦେଶ, ବିଳାସପୁର ଜିଲ୍ଲାର ଗୋଟିଏ ସ.ଡ. ହେଡକ୍ୱାର୍ଟର । ସେ ନଥିବାରୁ ତାଙ୍କ ଗାଁ ଫୁଟପୁରକୁ ଯାଇ ତାଙ୍କ ସହିତ ସାକ୍ଷାତ କଲି । ସେ ଖୁବ୍ ସହାନୁଭୂତି ଦେଖାଇଲେ କିନ୍ତୁ ସେଇ କଥା ଲାଇସେନ୍ସ ନାହିଁ, Adjournment ନେଲେ prepared ହେବେ, ପୁନଶ୍ଚ ରାୟଗଡ ଆସିଲି । ବହୁତ ଚିନ୍ତା ଭୋଗ କଲି । ତା ୨-୧୨-୪୭ ରେ ରାୟଗଡରେ Mr. Athley ନାମକ ଜଣେ ଯୁବ ଉକିଲଙ୍କ ସହ ଏ ବିଷୟରେ କଥା ହେଉ ହେଉ ସେ ମୋତେ ନେଇଗଲେ ଏନ୍. ସି. ମୁଖାର୍ଜି ନାମକ ଜଣେ ବୃଦ୍ଧ ଉକିଲଙ୍କ ପାଖକୁ । ସେ ହାଇକୋର୍ଟକୁ ଆସି ୨ ଟଙ୍କା ଫିସ ଦେଇ ରେକର୍ଡ ଦେଖି Adjournment ନିମନ୍ତେ ଦରଖାସ୍ତ ଲେଖି ପକାଇଦେଲେ ତା ୩୦ ୧୨-୪୭ ମଃ ଗୌରୀଶଙ୍କର ମହାପାତ୍ର ଓ ଦାଶରଥି ମିଶ୍ରଙ୍କ ପୁତ୍ର ରମାକାନ୍ତଙ୍କୁ ରାୟଗଡ ଷ୍ଟେସନରେ ଭେଟିଲି । ଆଜି ମକଦ୍ଦମା ବିଚାର ହେବ ବାମଣ୍ଡା ରାଜ୍ୟ ତରଫରୁ ଦୁଇଜଣ ଉକିଲ, ଜଣେ ବିନୟ ସେନ୍ ସେ ଦେବଗଡ କୋର୍ଟରେ ଷ୍ଟେଟ ତରଫରୁ ମକଦ୍ଦମା ପୈରବି କରୁଥିଲେ । ଅନ୍ୟ ଜଣକ କଲିକତା ହାଇକୋର୍ଟର ବାରିଷ୍ଟର ଥିଲେ । ଆମର

Adjournment petition Chief Justice ଓ ୨ୟ Justice Mr. Benarjee ନାମଞ୍ଜୁର କଲେ, Benarjee Ravenshaw College ରେ Law ପଢ଼ାଉଥିଲେ, ମୁଁ ତାଙ୍କୁ ଚିହ୍ନିଥିଲି । ସେ ଉକିଲ ମୁଖାର୍ଜିଙ୍କୁ ଡାକି ଆଣିବାକୁ କହିଲେ । ମୁଁ ତାଙ୍କୁ ଯାଇ କହିବାରୁ ସେ ପ୍ରସ୍ତୁତ ହୋଇ ନଥିବାରୁ ହାଇକୋର୍ଟ ଆସିବାକୁ ଅସ୍ୱୀକାର କଲେ । ପୁନଶ୍ଚ ହାଇକୋର୍ଟ ପିଅନ ଯାଇ ତାଙ୍କୁ ଡାକି ଆଣିଲା । Justice Benarjee ତାଙ୍କୁ ସେଠାରେ କେବଳ ବସିବାକୁ କହିଲେ । ମକଦ୍ଦମା ବିଚାର ହେଲା । ଷ୍ଟେଟ ପକ୍ଷ ଉକିଲଦ୍ୱୟ ତଳ କୋର୍ଟର ରାୟ ବଜାୟ ରଖିବାକୁ ବହୁତ ବହସ କଲେ । ଗୌରୀ ଦାଦାଙ୍କ ଅପିଲ ମଞ୍ଜୁର ହେଲା । ସେ ଖଲାସ ହେଲେ । ଦାଶରଥି ଓ ରାମଚନ୍ଦ୍ରଙ୍କର ଜାମିନ ମଞ୍ଜୁର ହେଲା ଓ ପୁନଃ ବିଚାର ନିମନ୍ତେ ତଳ କୋର୍ଟକୁ ଆଦେଶ ହେଲା । କିନ୍ତୁ ତୁରନ୍ତ କାର୍ଯ୍ୟକାରୀ ହେଲା ନାହିଁ ।

ତା ୪-୧୨-୪୭ ମଃ ରାୟଗଡରୁ କୁଲୁଙ୍ଗା ଆସି ଗାଙ୍ଗପୁର [ସୁନ୍ଦରଗଡ] ରାଜ୍ୟ ପ୍ରଜାମଣ୍ଡଳ କାର୍ଯ୍ୟକାରୀ କମିଟୀରେ ଯୋଗ ଦେଇ ବାମରା ଫେରି ଆସିଲି ଓ ଭନୁଶଙ୍କର ଯୋଶୀଙ୍କ ସହ ରାତ୍ରୀଯାପନ କଲି । ଯୋଶୀ ବାମଣ୍ଡାର ଜଣେ ଜଙ୍ଗଲ ଠିକାଦାର ଥିଲେ ଓ ଝାଡ଼ସୁଗୁଡାରୁ ଆସି ସାମୟିକ ବାମରାରେ ରହୁଥିଲେ । ତାଙ୍କ ସହିତ ବାମଣ୍ଡା ପ୍ରଜାମଣ୍ଡଳକୁ ସୁଦୃଢ କରିବାର ଯୋଜନା କଲୁଁ ।

ତା ୫ ୧୨ ୪୭ ମଃ କୁଚିଣ୍ଡାରେ ଏସ.ଡ଼.ଓ. ପ୍ରଫୁଲ୍ଲ ଚନ୍ଦ୍ର ଦେବଙ୍କ ସହ ସାକ୍ଷାତ ହେବାରୁ ରାୟଗଡ ହାଇକୋର୍ଟରେ ବିଚାର ହୋଇଥିବା ମକଦ୍ଦମା ବିଷୟ ତାଙ୍କୁ ଜଣାଇ ଦେଲି ଓ Justice ଦ୍ୱୟ ତଳ କୋର୍ଟର ବିଚାର ଉପରେ ଯେଉଁ ମତ ବ୍ୟକ୍ତ କରିଥିଲେ ତାହା ଶୁଣାଇ ଦେବାରୁ ସେ ମୁହଁ ଶୁଖାଇ ଦେଲେ ।

ତା ୬।୧୨ ରେ ସାଉଁଟିମାଳକୁ ଯାଇ ଦାଦାଙ୍କୁ ଏ ସବୁ ବିଷୟ ଶୁଣାଇଲି ଓ ତା ୧୪।୧୨ ରେ ସର୍ଦ୍ଦାର ବଲ୍ଲଭଭାଇ ପଟେଲ କଟକ ଆସୁଥିବାର ଓ ତା ୧୦।୧୨ରେ ବହାଲେଇ ସଭହୋଇ ତା ୧୧।୧୨ ରେ ଶେଷ ହେଉଥିବାର ତାଙ୍କୁ ଜଣାଇବାରୁ ତା ୧୧।୧୨ ରାତ୍ରରେ ଟ୍ରେନ୍ ଯୋଗେ କଟକ ଯିବାର ସେ ଠିକ୍ କଲେ ।

ତା ୭।୧୨ ଆସନ୍ତା ଦିନ ମୋର ୩୮୦ ମକଦ୍ଦମା କୁଚିଣ୍ଡା ଏସ୍.ଡ଼.ଏମ୍. କୋର୍ଟରେ ପେଶୀଥିବାରୁ ରାଜସାକ୍ଷୀମାନଙ୍କୁ କିପରି କ୍ରସ କରାଯିବ ଠିକ୍ କଲି ।

ତା ୮।୧୨ ଉକ୍ତ ମକଦ୍ଦମା ପଡ଼ଲା । ସାକ୍ଷୀମାନଙ୍କୁ କ୍ରସ କଲି । ସମସ୍ତଙ୍କ ମନକୁ ପାଇଲା । ତା ୯।୧୨ ରେ ବସାଲେଇ ସଭକୁ ଯିବା ନିମନ୍ତେ ଏସ୍.ଡ.ଓ. କୁଚିଣ୍ଡାଙ୍କ ଠାରେ ଦରଖାସ୍ତ କରି ଖଣ୍ଡେ ଟ୍ରକ୍ ନେବା ନିମନ୍ତେ ମଞ୍ଜୁରୀ ଆଣିଲି ।

ତା ୧୦।୧୨ ରେ ଟ୍ରକଟି ଗୁବିନ୍ଦପୁରରୁ ରତ୍ନାକର ପଟେଲ ଓ ଭବାନି-ଚରଣ ପାଲ୍ଙ୍କ ନେତୃତ୍ୱରେ ଗଡପୋଷ, କେଶାଇବାହାଲ, ଗୁବିନ୍ଦପୁର, ମହୁଲପାଲି ପ୍ରଭୃତିର ବିଶିଷ୍ଟ କର୍ମୀଙ୍କୁ ନେଇ ଆସିଲା । ମୁଁ କୁଚିଣ୍ଡାରେ ତାଙ୍କର ସହଗାମୀ ହେଲି । ନାନାଦି ସ୍ଲୋଗାନ ଦେଇ କୁଚିଣ୍ଡା ପରିକ୍ରମା କରି ଦେବଗଡ ପଥେ ଗଲୁଁ । ଏହି ଦଳ ୪ର୍ଥ ଦଳ ଅଟେ । ଏହି ଟ୍ରକ୍ ଯାଇ ବାମଣ୍ଡା ଦେଓ୍ୱାନ ବସନ୍ତ କୁମାର କରଙ୍କ କ୍ୱାଟର ସାମନାରେ ଛିଡା ହେଲା । ମୁଁ ଭିତରକୁ ଯାଇ ଦେଓ୍ୱାନଙ୍କ ସଙ୍ଗେ ସାକ୍ଷାତ ହେଲି । ସେତେବେଳେ ଦେବଗଡ ସ.ଡ.କୁ ପ୍ରବେଶ କରି ନ ପାରିବାକୁ ମୋ ଉପରେ ୧୪୪ ଜାରି-ଥିଲା । ମୁଁ ସଭକୁ ଯାଉଥିବାର ତାଙ୍କୁ ଜଣାଇ ଦେଲି । ସେ ବସାଲେଇ ସଭର ଜାଗଜମକ, ସାଜସଜ୍ଜା ଓ ଲୋକଙ୍କର ଉନ୍ମାଦନା ଦେଖି ପରିସ୍ଥିତି ବିଷୟରେ ସମସ୍ତ ଖବର ଜାଣି ଆଉ ତାଙ୍କର ରହିବା ଖଟିବ ନାହିଁ ବୋଲି ଭାବି ଜବି ମନ ଅମିଳିଆ କରି ବସିଥାନ୍ତି । ମୋ ଉକ୍ତ ସଭକୁ ଯିବାରେ କାହାରି କୌଣସି ଆପତ୍ତି ନଥିବାର ସେ ସଙ୍ଗେ ସଙ୍ଗେ ମତେ ଶୁଣାଇ ଦେଲେ । ସଙ୍ଗେ ସଙ୍ଗେ ରାଜବାଟୀର ଚତୁର୍ଦ୍ଦିଗରେ ସ୍ଲୋଗାନ ଦେଇ ପରିକ୍ରମା କଲୁଁ । ରାଜକର୍ମଚାରୀ ଡାକ୍ତର ମହେଶ୍ୱର ପ୍ରଧାନ ଏଠାରେ ଆମ ଟ୍ରକ ଉପରକୁ ଆସି ଆମ ସହିତ ସ୍ଲୋଗାନ ଦେଲେ । ଦେବଗଡର ପ୍ରଧାନ ପ୍ରଧାନ ରାସ୍ତା ଉପରେ ପରିକ୍ରମା କରି ଅନ୍ୟାନ୍ୟ ଧ୍ୱନି ମଧ୍ୟରେ "ଇନକ୍ୟୁଲାବ, ଲଢକେ ଲେଙ୍ଗେ ପ୍ରଜାରାଜ" ଧ୍ୱନି ଦେଇ ଗଗନ-ପବନ ପ୍ରକମ୍ପିତ କରି ବସାଲେଇ ରାସ୍ତା ଧରିଲୁଁ । ବସାଲେଇରେ ପହୁଞ୍ଚି ଯାହା ଦେଖିଲୁଁ—ଏହି ସଭ ନିମନ୍ତେ ସ୍ଥାନ ନିରୂପିତ ହୋଇଥିଲା ବସାଲେଇ ଉଡ ଜାହାଜ ପଡ଼ିଆ (ସନ ୧୯୪୧-୪୨ ମଧ୍ୟରେ ବାମଣ୍ଡା ରାଜା ଶ୍ରୀ ଭାନୁଗଙ୍ଗ ତ୍ରିଭୁବନ ଦେବ ଖଣ୍ଡେ ଉଡାଜାହାଜ ରଖିବାକୁ ଇଚ୍ଛାକରି ଉକ୍ତ ସ୍ଥାନର ଗଛ କଟାଇ ଭେଟିରେ ଗୋଟିଏ ଉଡାଜାହାଜ ପଡିଆ ତୟାର କରଇଲେ । ମୟୁରଭଞ୍ଜ ରାଜଙ୍କ ଠାରୁ ସେତେବେଳେ ପ୍ରାୟ ୨ ଲକ୍ଷ ଟଙ୍କା— ବାମଣ୍ଡା ରାଜ୍ୟର ଏକ ବର୍ଷର ଆୟ ମୂଲ୍ୟର ଗୋଟିଏ ୫ ଡଣିଆ ଉଡାଜାହାଜ

କିଣିଲେ । ତଣେ ଡ୍ରାଇଭର ବାରିପଦାରୁ ଉକ୍ତ ଉଡାଜାହାଜ ଉଡ଼ି ସମୟରେ ବଢ଼ାଲେଇକୁ ଆଣିଲେ । ସ୍ଥାନୀୟ କର୍ମଚାରୀଙ୍କ ନିର୍ଦ୍ଦେଶ ମତେ ପଡ଼ଆର କେତେକ ସ୍ଥାନରେ ଶୁଖିଲା କାଠ ଗଦାକରି ସେଥିରେ ନିଆଁ ଜଳାଇ ଦିଆ-ଯାଇଥିଲା । ଡ୍ରାଇଭରକୁ ତାହା ଦେଖା ନଯିବାରୁ ସେ ଜାହାଜଟିକୁ ଲେଉଟାଇ ନେଇଯାଉଥିବା ବେଳେ ଛେଣ୍ଡିପଦା ନିକଟସ୍ଥ ଗୋଟିଏ ପର୍ବତରେ କୁଟି ହୋଇ ଖଣ୍ଡ ବିଖଣ୍ଡ ହୋଇ ତଳେ ଖସି ପଡ଼ିଲା । ତାକୁ ସବୁ ଗୋଟିଏ ଟ୍ରକ୍‌ରେ ଗୋଟାଇ ଆଣି ଦେବଗଡ ସିଂହଦ୍ୱାର ନିକଟସ୍ଥ ସଭଗୃହରେ ରଖାଯାଇଥିଲା । ବାମଣ୍ଡା ପ୍ରଜା ଦେବଗଡ ଗଲେ ସେଠାକୁ ଯାଇ ଉଡାଜାହାଜ ଦେଖନ୍ତି [ସମ୍ବଲପୁରସ୍ଥ ଜଣେ କବାଡ଼ ମେ ସବୁ ଲୁହା ମୂଲ୍ୟରେ କିଣିନେଲେ) । ଏହି ଉଡାଜାହାଜ ପଡ଼ଆର ମଧ୍ୟ ସ୍ଥଳରେ ୨୦ ଫୁଟ ବ୍ୟାସାର୍ଦ୍ଧରେ ଗୋଟିଏ ଗୋଲାକାର ସଭମଣ୍ଡପ ତୟାର ହୋଇ ନଡା ଛାଉଣି ହୋଇଥିଲା । ଛାଉଣି ଉପରେ ଗୋଟିଏ ବଡ ତ୍ରିରଙ୍ଗି ଝଣ୍ଡା ଉଡୁ-ଥିଲା । ମଣ୍ଡପର ଚତୁର୍ପାଶ୍ୱରେ ଛୋଟବଡ ତ୍ରିରଙ୍ଗି ପତାକାରେ ସୁସଜ୍ଜିତ ହୋଇ ଥିଲା । ନେତା, କର୍ମୀ ଓ ଆଗନ୍ତୁକମାନଙ୍କ ନିମନ୍ତେ ବସିବା ସ୍ଥାନ ନିରୂପିତ ହୋଇ ରଖା ଯାଇଥିଲା । ସବୁ ଭୂମ୍ୟାସନ । ମଝିରେ ଶ୍ରୀ ଦିବାକର ମିଶ୍ର, ଗମ୍ଭାରିପାଳ ଅରଟରେ ସୂତା କାଟୁଥାନ୍ତି । (ତାଙ୍କ ନିର୍ଦ୍ଦେଶନାରେ ଏହି ସାଜସଜ୍ଜା ହୋଇଥିଲା । ସେ କୁଶଳୀ କେମରେ ରହି ଭରତ ଜାତୀୟ କଂଗ୍ରେସର ବାର୍ଷିକ ଅଧିବେଶନ ମାନଙ୍କରେ ଯୋଗ ଦେଇଥିଲେ ଓ ସେ ରୁଚିରେ ଏହି ସଭର ଆୟୋଜନ କରିଥିଲେ, ସେ ଜଣେ ଗାନ୍ଧବାଦୀ କର୍ମୀ) ସଭ ସ୍ଥଳରେ ସ୍ତ୍ରୀ ଓ ପୁରୁଷଙ୍କ ନିମନ୍ତେ ସ୍ୱତନ୍ତ୍ର ସ୍ଥାନ ନିର୍ଦ୍ଧାରିତ ହୋଇଥିଲା । ସଭସ୍ଥଳ ବିଭିନ୍ନ ଦିଗରୁ ପଶିବା ନିମନ୍ତେ ଓ ବାହାରିବା ନିମନ୍ତେ ପ୍ରାୟ ୩ ଫର୍ଲଙ୍ଗ ଲମ୍ବର କଇଁଚି ବାଉଁଶ ବାଡା ଦିଆଯାଇଥିଲା । ବାଉଁଶ ବାଡାର ଧାରେ ଧାରେ ଉଭୟ ପାର୍ଶ୍ୱରେ ତ୍ରିରଙ୍ଗ ପତାକାର ତୋରଣ ଦିଆଯାଇଥିଲା । ନେତା ଓ କର୍ମୀମାନଙ୍କ ନିମନ୍ତେ ବିଶ୍ରାମ ଘର, ରୁଉଳ, ପନିପରିବା, ଘିଅ,ତେଲ ରଖିବା ନିମନ୍ତେ ଭଣ୍ଡାର ଘର, ଅଫିସ ଘର, ବିଭିନ୍ନ ସ୍ଥାନରେ ୪୬ ଟା ରୋଷାଇ ଘର ଓ ଖାଇବା ସ୍ଥାନ, ହାଣ୍ଡି ମାଠିଆ ଓ ମାଟି ଗ୍ଲାସ ଅସଂଖ୍ୟ, ଖଳି ଚଉଡି ପର୍ବତାକାର, ଭତ ଡାଲି, ଖଟା ମଧ୍ୟ ବହୁ ପରିମାଣରେ ରନ୍ଧାହୋଇ ଶୃଙ୍ଖଳିତ ଓ ସବୁ ଢଙ୍କା ହୋଇ ରଖା ହୋଇଥାଏ ଓ ଅବିରତ ଘଣ୍ଟଣା ଚାଲିଥାଏ । ପ୍ରତ୍ୟେକ ସ୍ଥାନରେ ଶହ ଶହ ସ୍ୱେଚ୍ଛାସେବୀ ଗାନ୍ଧି ଟୋପି ଓ

ବେଢ଼୍ମାରି ନିଜ ନିଜ କାର୍ଯ୍ୟରେ ଲାଗିପଡ଼ଥାନ୍ତି । ଶାନ୍ତି ରକ୍ଷା ନିମନ୍ତେ ପ୍ରାୟ ଏକ ହଜାର ଠେଙ୍ଗାଧାରୀ ଶାନ୍ତିସେନା କାର୍ଯ୍ୟରତ । କୌଣସି ଠାରେ କିଛି ବିଶୃଙ୍ଖଳା ନାହିଁ । ଏସବୁ ସାଜସଜ୍ଜା ଦେଖି ମନ ପୁଲକିତ ହୋଇ ଉଠିବା କ୍ଷଣେ ସଙ୍ଗେ ବାମଣ୍ଡା ରାଜ୍ୟ ପ୍ରଜାମଣ୍ଡଳ ସଂପାଦକ ହିସାବରେ ମୋର ଦାୟିତ୍ୱ ବହୁତ ଗୁଣ ବଢ଼ିଗଲା— ଶାନ୍ତି ନାମରେ ଆମେ ଯେପରି ଅଶାନ୍ତି ବିସ୍ତାର ନକରୁଁ । ମଧ୍ୟାହ୍ନ ଭୋଜନ ଶେଷକରି ସଭାସ୍ଥଳକୁ ଗଲୁଁ—

ପ୍ରାୟ ଏକଲକ୍ଷ ଲୋକ ଏହି ସଭାରେ ଉପସ୍ଥିତ ଥିଲେ । ଯେଉଁଆଡ଼କୁ ଦେଖିଲେ କେବଳ ଜନ ସମୁଦ୍ର । ମୁଁ ୧୯୩୭ ମସିହାରେ ପୁରୀ ରଥଯାତ୍ରା ଦେଖିବାକୁ ଯାଇଥିଲି ଓ କେବଳ ସେଠାରେ ହିଁ ଏହିପରି ଜନ ସମାଗମ ଦେଖିଥିଲି ଅନ୍ୟ କୌଣସିଠାରେ ସେହିଦିନ ପର୍ଯ୍ୟନ୍ତ ଦେଖି ନଥିଲି । ସେଠାରେ କେବଳ ବାମଣ୍ଡାର ଲୋକ ନଥିଲେ, କେନ୍ଦୁଝର, ତାଳଚେର ପାଲଲହଡ଼ା, ରେଢ଼ାଖୋଲ ଓ ଆଠମଲ୍ଲିକ ପ୍ରଭୃତି ଗଡ଼ଜାତର ଲୋକ, ପ୍ରଜା-ମଣ୍ଡଳ କର୍ମୀ ଓ ନେତାମାନେ ଉପସ୍ଥିତ ଥିଲେ । ଡାକ୍ତର ମହେଶ୍ୱର ପ୍ରଧାନ ଆମ ସହିତ ଦେବଗଡ଼ରୁ ଆସିଥିଲେ କିନ୍ତୁ ମଣ୍ଡପରେ ଆଉଜଣେ ରାଜ-କର୍ମଚାରୀ, ଦେବଗଡ଼ ମୁନସିଫ ଶ୍ରୀ ଦୁର୍ଗାଚରଣ ଶର୍ମା ଗାନ୍ଧି ଟୋପି ପିନ୍ଧି ପ୍ରଜାମଣ୍ଡଳର ଜଣେ ଆଜ୍ଞାବହ କର୍ମୀ ସାଜି ଉକ୍ତ ସଭାମଣ୍ଡପରେ ଉପସ୍ଥିତ ।

ଶ୍ରୀ ଗଦାଧର ବେହେରା ପ୍ରଧାନ ସଇତାଙ୍କ ସଭାପତିତ୍ୱରେ ସଭାକାର୍ଯ୍ୟ ପରିଚାଳିତ ହେଲା । ଏହି ସଭାରେ ଭାଷଣ ଦେଇଥିଲେ ରତ୍ନାକର ପଟେଲ ଲେଖକ, ଭବାନୀ ଚରଣ ପାଳ, ସୌଭାଗ୍ୟ ଚନ୍ଦ୍ର ଦିବେଦୀ, ବଣ୍ଡୁରାମ ପ୍ରଧାନ,··· ଗଡ଼ନାୟକ, ଯୁଗେଶ୍ୱର ମିଶ୍ର, ଢ଼ଲେଶ୍ୱର ପଟେଲ ଗୌନ୍ତିଆ, କୁନ୍ତଳ । ଅନ୍ୟାନ୍ୟ ଗଡ଼ଜାତ ମାନଙ୍କରୁ ନେତାମାନଙ୍କୁ ମଧ୍ୟ କହିବାର ସୁଯୋଗ ଦିଆଯାଇଥିଲା । ବଣାଇର ନରହରି ଦଣ୍ଡପାଟ ଉଡ଼ସ୍ୱନୀ ଭାଷାରେ ବାମଣ୍ଡା ରାଜା ଭାନୁଗଙ୍ଗଙ୍କ ବ୍ୟକ୍ତିଗତ ଚରିତ୍ର ଉତ୍‌ଥାପନ କରି କହିଲେ— ବାମଣ୍ଡାର ପୂର୍ବତନ କୌଣସି ରାଜା ଏପରିକି କୋର୍ଟଓ୍ୱାଡସ ସମୟରେ ଗୋର ସାହେବ ମେକଫର୍‌ସନ ଦେବଗଡ଼ର ମା୧୦ଇଲ ପରିଧିରେ କୌଣସି ମଦଭାଟି, କୁହୁନାଭାଟି ବା ଖଜୁରୀ ତାଡ଼ି ଭାଟି ଖୋଲିବାକୁ ଅନୁମତି ଦେଇ ନଥିବା ବେଳେ ରାଜା ଭାନୁଗଙ୍ଗ ଦେବଗଡ଼ ଟାଉନରେ ମଦଭାଟି ଖୋଲି-ଦେଇ ନିଜେ ମଦୁଆ ହେବା ସଙ୍ଗେ ସଙ୍ଗେ ନିଜ ବଂଶଧର ଓ ଦେବଗଡ଼ ବାସିନ୍ଦାଙ୍କୁ ମଦୁଆ କରିଦେଲେ । ସେ ଦାଶରଥି ମିଶ୍ର ଓ ରାମଚନ୍ଦ୍ର ନାୟକଙ୍କୁ ଅନ୍ୟାୟ ଭାବେ ଜେଲ ଦେଇଥିବାର ସମାଲୋଚନା କଲେ । ଏହି ମୁହୂର୍ତ୍ତରେ

